# କିଏ ଏ କବିସୂର୍ଯ୍ୟ ?

ଲେଖକ
ବାସୁଦେବ ମହାପାତ୍ର

ପ୍ରକାଶକ
କବିସୂର୍ଯ୍ୟ ପ୍ରତିଭା ପରିଷଦ
କବିସୂର୍ଯ୍ୟନଗର, ଗଞ୍ଜାମ

# କିଏ ଏ କବିସୂର୍ଯ୍ୟ ?

ଲେଖକ
ବାସୁଦେବ ମହାପାତ୍ର
ଲେଖକ ନିବାସ
କବିସୂର୍ଯ୍ୟନଗର - ୭୬୧ ୧୦୪

ପ୍ରକାଶକ
କବିସୂର୍ଯ୍ୟ ପ୍ରତିଭା ପରିଷଦ
କବିସୂର୍ଯ୍ୟନଗର, ଗଞ୍ଜାମ

ପ୍ରକାଶ କାଳ : ୨୦୦୦

ପ୍ରଚ୍ଛଦ : ବିଷ୍ଣୁ ପଟ୍ଟନାୟକ

ମୁଦ୍ରଣ : ନ୍ୟାସ୍‌ନାଲ୍ ସ୍କ୍ରୀନ୍ ଏଣ୍ଡ ଅଫ୍‌ସେଟ୍
କବିସୂର୍ଯ୍ୟନଗର, ଗଞ୍ଜାମ । ଫୋନ୍ : ୭୦୬୭୮

ମୂଲ୍ୟ : ଟ ୭/- ମାତ୍ର ।



(ଏହି ବହିର ବିକ୍ରୀଲବ୍ଧ ଧନ ସଦ୍‌ଗ୍ରନ୍ଥ ପ୍ରକାଶନରେ ବିନିଯୁକ୍ତ ହେବ

# ଆମର ପରିଚୟ

ଆଜିକି ପ୍ରାୟ ଦୁଇ ଶହ ବର୍ଷ ତଳର କଥା । ଗଞ୍ଜାମ ମାଟିରେ ଜନ୍ମ ନେଇଥିଲେ ଜଣେ ବିଖ୍ୟାତ କବି । ତାଙ୍କ ନାଂ ବଳଦେବ ରଥ । ତାଙ୍କ ଲେଖା ଓଡ଼ିଶାକୁ ଧନ୍ୟ କରିଥିଲା । ସେ କବିସୂର୍ଯ୍ୟ ଉପାଧି ପାଇଥିଲେ । ଏଇ ଉପାଧିକୁ ନେଇ ସେ ସବୁଠି ପରିଚିତ । ତାଙ୍କ ସ୍ମୃତି ରଖିବା ପାଇଁ ତାଙ୍କ ଜନ୍ମସ୍ଥଳ ଆଠଗଡ଼ ପାଖ ବୋଇରାଣୀ ଗାଁର ନାଂ କବିସୂର୍ଯ୍ୟନଗର ହେଲା । ଧୀରେ ଧୀରେ କବିସୂର୍ଯ୍ୟ ନାଂ ଆଗକୁ ବଢ଼ିଲା । କବିସୂର୍ଯ୍ୟନଗର ପରିଚାଳିତ ସମିତି ହେଲା । ପୁଣି ଏଇ ଶବ୍ଦ ନାଂ ଅନୁସାରେ ହେଲା ଓଡ଼ିଶାର କବିସୂର୍ଯ୍ୟନଗର ନିର୍ବାଚନମଣ୍ଡଳୀ ।

କବିସୂର୍ଯ୍ୟଙ୍କୁ ନେଇ ଆମ ଜନ୍ମମାଟିର ପରିଚୟ ଏବଂ ଏଇ ପବିତ୍ର ମାଟିକୁ ନେଇ ଆମର ପରିଚୟ । ତେଣୁ ତାଙ୍କ ବିଷୟରେ ଆମେ କିଛି ନ ଜାଣିବା ଠିକ୍ ହେବ ନାହିଁ । ତା ଲାଗି ଏ କହାଣି । ଏହା ପଢ଼ । ତାପରେ କବିସୂର୍ଯ୍ୟଙ୍କ ଅମର ଲେଖାମାନ ପଢ଼ । ତାଙ୍କ ମହାନତା ବୁଝି ।

କବିସୂର୍ଯ୍ୟନଗର
ଶ୍ରୀପଞ୍ଚମୀ, ୨୦୦୦

ବିନୀତ
[signature]

# ଏଥିରେ ଅଛି :


| | ବିଷୟ | ପୃଷ୍ଠା |
|---|---|---|
| ୧. | ବୁଢ଼ା ବରକୁ ଟୋକୀ କନିଆଁ | ୧ |
| ୨. | ମଣିପୁରିଆ ରଥ | ୫ |
| ୩. | ମନ୍ତ୍ର କଣ ନ କରେ ? | ୮ |
| ୪. | ଦୁର୍ଗା ସତ ମା' ହେଲେ | ୧୦ |
| ୫. | ବାପକୁ ବଳି ବେଟା | ୧୩ |
| ୬. | ତୁମେ ଗୋଟାଏ ସାପ ! | ୧୭ |
| ୭. | ଚୁଗୁଲିଆକୁ ଚେଁଖେ | ୨୨ |
| ୮. | ଫୁଲର ମହକ ଚହଟିଲା | ୨୮ |
| ୯. | ବଣ ହରିଣୀର ଲେଉଟାଣି | ୩୫ |
| ୧୦. | ନରନାରାୟଣ ସେବା | ୩୭ |
| ୧୧. | ସୂର୍ଯ୍ୟ ବୁଡ଼ିଗଲେ ! | ୪୦ |




# ବୁଢ଼ା ବରକୁ ଟୋକୀ କନିଅାଁ

ବହୁତ ଦିନ ତଳର କଥା । ପୁରୀରେ ଜଣେ ପ୍ରସିଦ୍ଧ ବ୍ରାହ୍ମଣ ଥିଲେ । ତାଙ୍କ ନାଁ ବଳଭଦ୍ର ରଥ ବାଜପେୟୀ । ସେ ଥିଲେ ପୁରୀର ଗଜପତି ମହାରାଜାଙ୍କ ରାଜଗୁରୁ । ଉଚ୍ଚ ଜାତିର ବ୍ରାହ୍ମଣ । ତେଣୁ ସେ ନିଜ ବଂଶକୁ 'ସାମନ୍ତ ରଥ' ବୋଲି ନାଁ ଦେଲେ । ସେହି ଦିନଠାରୁ ସାମନ୍ତ ବ୍ରାହ୍ମଣମାନେ ବ୍ରାହ୍ମଣ ଜାତିରେ ସବୁଠାରୁ ଶ୍ରେଷ୍ଠ ବୋଲାଇଲେ ।

ବାଜପେୟୀଙ୍କର ଦୁଇ ପୁଅ । ସେମାନେ ପାଠ ପଢ଼ି ଯୋଗ୍ୟ ହେଲେ । ବାଜପେୟୀ ଦୁଇ ପୁଅଙ୍କୁ ପୁରୀ ରାଜସଭାରେ ଥଇଥାନ କରାଇଦେଲେ ।

ବାଜପେୟୀ ବୁଢ଼ା ହେଲେଣି । ବୟସ ସତୁରୀକୁ ଛୁଇଁଲାଣି । ଆଉ କେତେ ଦିନ ଅବା ଘରଜଞ୍ଜାଳରେ ଘାଣ୍ଟି ହେବେ ? ତୀର୍ଥ କରିବାକୁ ତାଙ୍କର ମନ ବଳିଲା । ଭାବିଲେ, ଦକ୍ଷିଣ ଭାରତ ଯିବେ । ସେଠିକା ବୈଷ୍ଣବ ତୀର୍ଥସ୍ଥାନମାନ ବୁଲି ଆସିବେ ।

ଆଗ କାଳର କଥା । ରେଳଗାଡ଼ି, କି ବସ୍ କଥା ସାତ ସପନ । ଯିବ ତ ଚାଲି ଚାଲି ଯାଅ । ଦୂର ବାଟ ଯିବାକୁ ହେଲେ ବହୁତ ଦିନ ଲାଗୁଥାଏ । ବାଟବସାରେ ରହି ରହିକା ଯିବାକୁ ପଡୁଥାଏ ।

ବାଜପେୟୀ ଦିନେ ଘରୁ ବାହାରି ପଡ଼ିଲେ । କିଛି ଦିନ ପରେ ସେ ବାଣପୁର ପାଖ ଭୁଷଣ୍ଡପୁରରେ ପହଞ୍ଚିଲେ । ସେଠି ଉଚ୍ଚ ଜାତିର ଜଣେ ବ୍ରାହ୍ମଣ ଥିଲେ । ସେ ବାଜପେୟୀଙ୍କ ନାଁ ଆଗରୁ ଜାଣିଥିଲେ । ତେଣୁ ଅତି ଆଦରରେ ବାଜପେୟୀଙ୍କୁ ନିଜ ଘରେ ସ୍ଥାନ ଦେଲେ ।

ବାଜପେୟୀ ନିତି ବଡ଼ି ଭୋରରୁ ଉଠି ଗାଧୋଇ ପୂଜାପାଠ କରନ୍ତି । ବ୍ରାହ୍ମଣଙ୍କର ଏଗାର ବର୍ଷର ଝିଅଟିଏ ଥିଲା । ସେ ବି ଭୋରରୁ ଉଠି ବାଜପେୟୀଙ୍କ ପାଇଁ ଫୁଲ, ତୁଳସୀ, ବେଲପତ୍ର ଆଦି ଆଣିଦେଉଥାଏ ।

ସେତେବେଳେ ପୁଅଝିଅମାନେ ଅଳ୍ପ ବୟସରେ ବିବାହ ହେଉଥିଲେ । ଏ ଝିଅଟି ବାଜପେୟୀଙ୍କ ନାତୁଣୀ ବୟସର । ପୂଜା ଜିନିଷ ଥୋଇଲାବେଳେ ବାଜପେୟୀ ତାକୁ ଥଟ୍ଟାରେ ପଚାରନ୍ତି - ହଇ ଲୋ ମା', ତୁ ତ କାହିଁ ଏଯାଏଁ ବାହା ହୋଇନୁ ? କାହାକୁ ବାହା ହେବାକୁ ମନ କରିଛୁ, ମୋତେ କହ । ମୁଁ ତୋ ବାପାକୁ ମନାଇ ତା ସହିତ ତୋତେ ବାହା କରାଇଦେବି ।

ଝିଅଟି କଣ ଅବା କହନ୍ତା ? ଲାଜରେ ମୁଣ୍ଡ ପୋତି ସେଠୁ ଚାଲିଯାଏ । ମା' ଆଗରେ ଏ କଥା କହେ । ମା' ବି ଥଟ୍ଟା କଥା ବୋଲି ଭାବି ଚୁପ୍ ରହନ୍ତି ।

ବାଜପେୟୀଙ୍କ ଥଟ୍ଟା ବନ୍ଦ ହେଲାନି । ଆଉ କେତେ ଥର ଝିଅଟିକୁ ବାହାଘର କଥା ପଚାରିଲେ । ଝିଅର ମା' ଭାରି ବୁଦ୍ଧିମତୀ ଥିଲେ । ଦେଖିଲେ, ବୁଢ଼ା ହେଲେ ବି ବାଜପେୟୀ ଯୁବକ ପରି ଦେଖାଯାଉଛନ୍ତି । ନାଁ ବି ଅଛି । ଝିଅକୁ ତାଙ୍କ ସହିତ ବାହା କରାଇଦେଲେ ଭଲ ହୁଅନ୍ତା । ସ୍ୱାମୀଙ୍କୁ ଏ କଥା ପଚାରିଲେ । ବ୍ରାହ୍ମଣ ରାଜି ହେଲେ ।

(୩)

ସେଠୁ ମା’ ଝିଅକୁ ଡାକି କହିଲେ - ବାଜପେୟୀ ତୋତେ ଆଉ ଥରେ ପଚାରିଲେ କହିବୁ, ‘‘ତୁମେ ମୋ ବର ହୁଅ ।’’

ତା’ପର ଦିନ କଥା । ବାଜପେୟୀ ହସି ହସି ଝିଅକୁ କହିଲେ - ଆଲୋ ମା’, କିଏ ତୋ ବର ହେବ, କହିଲୁ ?

ଝିଅ ଚଟାପଟ୍ ଉତ୍ତର ଦେଲା - ତୁମେ ମୋ ବର ହୁଅ ।

ବୁଢ଼ା ବାଜପେୟୀ ହୋ ହୋ କରି ହସି ଉଠିଲେ । ପରିହାସ କରି ପୁଣି କହିଲେ - ମୋତେ ବାହା ହେବୁଟି ? ଠିକ୍ ଅଛି । ଗୌଣିଏ ମୋହର ଯୌତୁକ ଦେଲେ ମୁଁ ତୋତେ ବାହା ହେବି । ଏମିତି ପାଚିଲାବାଳୁଆ ବର ତୋତେ ମିଳିବ ଆଉ କୋଉଠି ?

ଝିଅ ମା’ ଆଗରେ ଏ କଥା କହିଲା । ବାପାମା’ଙ୍କ ମନ ତ ବୁଢ଼ାଙ୍କଠାରେ ଲାଖିଯାଇଛି । ସେମାନେ ଲାଗିପଡ଼ି ଗୌଣିଏ ମୋହର ଯୋଗାଡ଼ କରିଦେଲେ । ତା’ପର ଦିନ ଝିଅଟି ଗୌଣିଏ ମୋହର ଉପରେ ଫୁଲ, ତୁଳସୀ ଓ ବେଲପତ୍ର ସଜାଇ ବାଜପେୟୀଙ୍କ ଆଗରେ ଥୋଇଦେଇ କହିଲା - କହିଥିଲ ପରା, ନିଅ ।

ଏବେ ବାଜପେୟୀ ବଡ଼ ଅଡୁଆରେ ପଡ଼ିଲେ । କହିଲେ - ମୁଁ ଥଟ୍ଟାରେ ତୋତେ ସେମିତି କହିଦେଲିନା । ତୁ କଣ ତାହା ସତ ମଣିଲୁ ? ମୁଁ ବୁଢ଼ା ଲୋକ । ବାହା ହେବା ପାଇଁ ମୋର କଣ ବୟସ ଅଛି ?

ତେବେ ଝିଅର ବାପାମା’ ଛାଡୁଛନ୍ତି କେତେକେ ? ବାଜପେୟୀଙ୍କୁ ବୁଝାଇଲେ । କଥା ଦେଇ ସେ ଫେରାଇନେବେ କେମିତି ? ଅଧର୍ମ ହେବ । ବାଜପେୟୀ ଆଉ କରନ୍ତେ କଣ ? ଅଗତ୍ୟା ରାଜି ହେଲେ ।

ବୁଢ଼ା ବରକୁ ଟୋକୀ କନିଆଁ । ବାହାଘର ବଢ଼ିଗଲା । ବୁଢ଼ା ଆଉ ତୀର୍ଥକୁ ଯିବେ କଣ ? ପୁଣି ନୂଆ ଘର ସଂସାରରେ ବୁଡ଼ିଗଲେ । ତାଙ୍କ ପୁଅମାନେ ଏ କଥା ଶୁଣି ରାଗରେ ନିଆଁବାଣ ହୋଇଗଲେ । ସେମାନେ ବାପାଙ୍କ ପାଳ ପିତୁଳା କରି ତାକୁ ଦାହ କଲେ । ତାପରେ ବାପାଙ୍କ ଶୁଦ୍ଧିଘର କରିଦେଲେ ।

ଦିନ ଗଡ଼ିଚାଲିଲା । ବୁଢ଼ା ବାଜପେୟୀ ରୋଗରେ ପଡ଼ି ମରିଗଲେ । ସେତେବେଳେ ତାଙ୍କ ସ୍ତ୍ରୀ ଗର୍ଭବତୀ ଥିଲେ । କିଛି ଦିନ ପରେ ତାଙ୍କର ପୁଅଟିଏ ହେଲା । ଏଇ ପୁଅଟିର ନାଁ ଥିଲା କୁଳମଣି ।



# ମଣିପୁରିଆ ରଥ

ବାଜପେୟୀଙ୍କ ଦ୍ୱିତୀୟ ସ୍ତ୍ରୀର ପୁଅ ଥିଲେ କୁଳମଣି ରଥ । ସେ ବାପାଙ୍କ ପରି ପଣ୍ଡିତ ହିସାବରେ ବେଶ୍ ନାଁ କଲେ । ପୁରୀ ମହାରାଜାଙ୍କଠାରୁ ଜମିଦାନ୍ତି, ବୃତ୍ତି ପାଇଲେ । ସେ ମଣିପୁର ଶାସନରେ ରହୁଥିଲେ । ସେଥିପାଇଁ ତାଙ୍କ ବଂଶର ନାଁ ହେଲା 'ମଣିପୁରିଆ ରଥ' ।

ସବୁ ଦିନ ସମାନ ଯାଏ ନାହିଁ । କାଳକ୍ରମେ ଏଇ ରଥ ଘର ବ୍ରାହ୍ମଣମାନେ ଗରିବ ହୋଇଗଲେ । ସେମାନଙ୍କ ଜମିବାଡ଼ି ବିକ୍ରୀ ହୋଇଗଲା । ପୁରୀ ରାଜସଭାରୁ ସାହାଯ୍ୟ ମିଳିଲା ନାହିଁ । ପେଟ ପୋଷିବେ କେମିତି ? ତେଣୁ ସେମାନେ ପୁରୀ ଜିଲା ଛାଡ଼ି ଗଞ୍ଜାମକୁ ଚାଲିଆସିଲେ । ଏଠି କିଏ ପୁରୋହିତ କାମ କଲା । କିଏ ଅବା କର୍ମକର୍ମାଣି କଲା । ଆଉ କିଏ ନିଜ ବିଦ୍ୟାବୁଦ୍ଧି ବଳରେ ରାଜସଭାରେ ସ୍ଥାନ ପାଇଲା ।

ଆଜିକି ପ୍ରାୟ ଅଢ଼େଇ ଶହ ବର୍ଷ ତଳର କଥା । ସେତେବେଳେ ଇଂରେଜମାନେ ଭାରତର ଅନେକ ରାଜ୍ୟରେ ଶାସନ ଚଳାଇଲେଣି । ତେବେ ଓଡ଼ିଶାକୁ ଆସି ନ ଥାନ୍ତି । ଓଡ଼ିଶାରେ ଛୋଟ ବଡ଼ ହୋଇ ଶହ ଶହ ରାଜା ରାଜୁତି କରୁଥାନ୍ତି । ପୁରୀର ଗଜପତି ମହାରାଜା ଓଡ଼ିଶାର ସବୁ ରାଜାଙ୍କ ମଉଡ଼ମଣି । ସେତେବେଳେ ସବୁ ରାଜାଙ୍କର

ରାଜସଭା ଥାଏ । ସେଠି ଅନେକ କବି ଓ ପଣ୍ଡିତ ଥାଆନ୍ତି । ରାଜାଙ୍କଠାରୁ ସାହାଯ୍ୟ ପାଇ ସେମାନେ ସାହିତ୍ୟ ଓ ଧର୍ମଶାସ୍ତ୍ର ଚର୍ଚ୍ଚା କରୁଥାନ୍ତି ।

ଏଇ ମଣିପୁରିଆ ରଥ ବଂଶରେ ଜଣେ ଥିଲେ ଶ୍ରୀନିବାସ ରଥ । ସେ ଗଞ୍ଜାମର ବଡ଼ଖେମୁଣ୍ଡି ରାଜ୍ୟରେ ଆସି ପହଞ୍ଚିଲେ । ସେଠି କର୍ମକର୍ମାଣି କରି ପରିବାର ଚଳାଇଲେ । ତାଙ୍କ ପୁଅ ଉଜ୍ଜ୍ୱଳ ରଥ । ସେ ଜଣେ ନିଷ୍ଠାପର ବ୍ରାହ୍ମଣ ଓ କବି ଥିଲେ । ସଂସ୍କୃତ ଭାଷାରେ ବି ସେ ଧୁରନ୍ଧର ପଣ୍ଡିତ ଥିଲେ । ତେଣୁ ବଡ଼ଖେମୁଣ୍ଡି ରାଜା ତାଙ୍କୁ ସଭାକବି ରୂପେ ରଖିଲେ । ଉଜ୍ଜ୍ୱଳ ରଥ 'ସଜ୍ଜନାନନ୍ଦ ଚମ୍ପୂ' ଓ 'ରାମ ଚମ୍ପୂ' ନାମକ ଦୁଇଟି ସଂସ୍କୃତ କାବ୍ୟ ରଚନା କରିଥିଲେ ।

ସେତେବେଳେ ଗଞ୍ଜାମର ଆଠଗଡ଼ରେ ତ୍ରିପୁରାରି ଓତା ନାମକ ଜଣେ ବିଚକ୍ଷଣ ପଣ୍ଡିତ ଥିଲେ । ସଂସ୍କୃତ ଓ ଓଡ଼ିଆ ଭାଷାରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ବି ଜଣେ ବଡ଼ ତାନ୍ତ୍ରିକ ଥିଲେ । ଘରେ ଦୁର୍ଗାମୂର୍ତ୍ତି ରଖି ପୂଜା କରୁଥିଲେ । ମନ୍ତ୍ରବଳରେ ଦୁର୍ଗାଙ୍କୁ ସନ୍ତୁଷ୍ଟ କରି ସେ ଅସମ୍ଭବ କାମ କରିପାରୁଥିଲେ । ସେଥିପାଇଁ ସମସ୍ତେ ତାଙ୍କୁ ଭୟ ଓ ଭକ୍ତି କରୁଥିଲେ ।

ଓତାଏ ଟିକିଏ ଛୋଟ କୁଳର ବ୍ରାହ୍ମଣ ଥିଲେ । ତାଙ୍କର ପୁଅ ନ ଥିଲା । ଗୋଟିଏ ମାତ୍ର ଅଲିଅଳୀ ଝିଅ । ଦେଖିବାକୁ ଭାରି ସୁନ୍ଦର । ବିବାହ ବୟସ ହୋଇଥାଏ । ଉଚ୍ଚ କୁଳର କୌଣସି ବ୍ରାହ୍ମଣ ଘରେ ଝିଅକୁ ବାହା କରାଇବାକୁ ଓତାଏ ମନ ବଳାଇଲେ । ବଡ଼ଖେମୁଣ୍ଡିର ଶ୍ରୀନିବାସ ରଥଙ୍କ ପାଖକୁ ପ୍ରସ୍ତାବ ନେଇ ଗଲେ । ଶ୍ରୀନିବାସ ରାଜି ହେଲେ । ତାଙ୍କ ପୁଅ ଉଜ୍ଜ୍ୱଳଙ୍କ ସହିତ ଓତାଙ୍କ ଝିଅର ବାହାଘର ହୋଇଗଲା ।

ଉଜ୍ଜ୍ୱଳ ରଥଙ୍କର ଝିଅଟିଏ ହେଲା । ତା ନାଁ ସୁଲକ୍ଷଣା । ତାପରେ ହେଲା ପୁଅଟିଏ । ନାଁ ରଖିଲେ ହରିହର । ଦୁଇ ପିଲା ବଡ଼ ହେଲେ । ଠିକ୍ ବେଳେ ବିବାହ ହେଲେ । ତେବେ ଉଜ୍ଜ୍ୱଳଙ୍କ ଭାଗ୍ୟ ମନ୍ଦ । ସୁଲକ୍ଷଣା ଅଲକ୍ଷଣା ହେଲା । ବାହା ହେବା ପରେ ସେ ବିଧବା ହେଲା । ଘରର ବୋହୂଟି ବି ମରିଗଲା । ଉଜ୍ଜ୍ୱଳଙ୍କୁ ଚାରିଆଡ଼ ଅନ୍ଧାର ଦେଖାଗଲା । ପୁଅକୁ ପୁଣି ବାହା ଦେବାକୁ ଚାହିଁଲେ । କିନ୍ତୁ ହରିହର ଦ୍ୱିତୀୟ ଥର ବାହା ହେବାକୁ ରାଜି ହେଲେନି ।

ଚିନ୍ତାରେ ବୁଡ଼ିଗଲେ ଉଜ୍ଜ୍ୱଳ ରଥ ଓ ତାଙ୍କ ସ୍ତ୍ରୀ । ତାଙ୍କ ବଂଶରକ୍ଷା ହେବ କେମିତି ? ତାଙ୍କ ଇଷ୍ଟଦେବ ଥିଲେ ବଳଦେବ । ତାଙ୍କରି ପାଖରେ ଅଧିଆ ପଡ଼ିଲେ । ହୃଦୟର ଦୁଃଖ ଜଣାଇଲେ । ଇଷ୍ଟଦେବ ତାଙ୍କ ଗୁହାରି ଶୁଣିଲେ । ଆଶ୍ଚର୍ଯ୍ୟର କଥା ! ବୃଦ୍ଧ ବୟସରେ ପବିତ୍ର ଶ୍ରୀପଞ୍ଚମୀ ତିଥିରେ ତାଙ୍କ ସ୍ତ୍ରୀଙ୍କର ପୁଅଟିଏ ହେଲା । ଇଷ୍ଟଦେବଙ୍କ ନାଁ ଅନୁସାରେ ସେ ଏଇ ପୁଅର ନାଁ ଦେଲେ ବଳଦେବ । ଏହା ୧୭୮୯ (ଅନ୍ୟ ମତରେ ୧୭୭୯) ସାଲର କଥା ।

ବଳଦେବ ଚାନ୍ଦକଳା ପରି ବଢ଼ିବାକୁ ଲାଗିଲେ । ରୂପ ଯେମିତି, ଗୁଣ ସେମିତି । ଯାହା ଥରେ ପଢ଼ୁଥିଲେ କି ଶୁଣୁଥିଲେ, ତାହା ମନେ ରଖୁଥିଲେ । ବାପାମା'ଙ୍କ ଛାତି ଫୁଲି ଉଠୁଥାଏ । ଦଶ ବର୍ଷ ବୟସରେ ବଳଦେବଙ୍କ ବ୍ରତଘର ହେଲା । କିଏ ଜାଣିଥିଲା, ଏ ପରିବାର ଉପରେ ହଠାତ୍ ଅକାଳ ଚଡ଼କ ପଡ଼ିବ ? ଏହାର ଚାରିମାସ ପରେ ବଳଦେବଙ୍କ ମା' ସବୁ ଦିନ ପାଇଁ ଆଖି ବୁଜିଦେଲେ । ଉଜ୍ଜ୍ୱଳଙ୍କ ପରିବାର ଅନ୍ଧାରରେ ବୁଡ଼ିଗଲା ଯେମିତି !



# ମନ୍ତ୍ର କଣ ନ କରେ ?

ଝିଅ ମରିଯିବା ଶୁଣି ତ୍ରିପୁରାରି ଓତା ଦୁଃଖରେ ଭାଙ୍ଗିପଡ଼ିଲେ । ବାପା ଥାଉ ଥାଉ ଝିଅ ଚାଲିଗଲା । ଛୋଟ ନାତି ବଳଦେବ ମାଆ ଛେଉଣ୍ଡ ହୋଇଗଲା । ତେଣୁ ସେ ଆଠଗଡ଼ ନିଜ ଘରକୁ ବଳଦେବକୁ ନେଇଗଲେ । ଅଜାଆଈଙ୍କ ଆଦର, ଯତ୍ନରେ ବଳଦେବ ନିଜ ମା'ଙ୍କୁ ଭୁଲିଗଲେ । ଓତାଏ ନାତିକୁ ଘରେ ସଂସ୍କୃତ ପଢ଼ାଇବାକୁ ଲାଗିଲେ ।

ଦିନକର ଘଟଣା । ସେ ଦିନ ଦୀପାବଳୀ ଅମାବାସ୍ୟା । ଘରେ ବାହାରେ ସବୁଠି ପିଲାଙ୍କ ହୋହଲ୍ଲା । କାହାରି ଗୋଡ଼ ତଳେ ଲାଗୁ ନ ଥାଏ । ସଞ୍ଜ କେମିତି ହେବ, ପିଲାଏ ତାକୁ ଚାହିଁ ରହିଥାନ୍ତି । ଦୀପ ଜଳିବ । ବାଣ ଫୁଟିବ । କାତିଙ୍କାତିକା ଫୋଟକା, ଫୁଲଝରୀ ଆଦିରେ ଗାଁଦାଣ୍ଡ ଦୁଲୁକି ଉଠିବ ।

ମଣିଷ ବିଚାରକୁ ଦଇବ ବିଚାର ହେଲା ଓଲଟା । ଦିନ ତିନିଟାବେଳେ ଆକାଶରେ ଘୋଟିଗଲା କଳାହାଣ୍ଡିଆ ମେଘ । ତା' ସାଙ୍ଗକୁ ଆରମ୍ଭ ହୋଇଗଲା ତୋଫାନିଆ ପବନ । ଟିକି ଟିକି ପିଲାଙ୍କ ମୁହଁ ଫିକା ପଡ଼ିଗଲା । ସଭିଏଁ ଦୁଃଖରେ ଭାଙ୍ଗିପଡ଼ିଲେ । ଚାହୁଁ ଚାହୁଁ ମେଘ ଦେହରୁ ଗଳି ପଡ଼ିଲା ଟପର ଟପର ପାଣି ।

ପିଲାଙ୍କ ମେଳରେ ଥିଲେ ବଳଦେବ । ସେ ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କ ଛାତିରୁ କୋହ ଉଠିଲା । ସେ ଅଜାଙ୍କ ପାଖକୁ

ଆସି ତାଙ୍କ କୋଳରେ ମୁହଁ ଲୁଚାଇ କଇଁ କଇଁ କାନ୍ଦିବାକୁ ଲାଗିଲେ । ଅଜା ପଚାରିଲେ - ବାପ, କାନ୍ଦୁଛୁ କାହିଁକି ? କଣ ହେଲା ତୋର ?

ବଳଦେବ ଧକେଇ ଧକେଇ କହିଲେ - ଅଜା, ଏ ବରଷା ପବନରେ ଆମେ ବାଣ ଫୁଟାଇବୁ କେମିତି ? ତୁମେ ମନ୍ତ୍ର ଜାଣିଛ । ବର୍ଷାପବନ ବନ୍ଦ କରିଦିଅ ।

ଓତାଏ ଅଳିଅଳ ନାତିର ଦୁଃଖ ବୁଝିଲେ । କହିଲେ - ଯା, ପୂଜାଘରେ ମଣିଷଦାନ୍ତର ମାଳାଟି ଅଛି । ସେଇଟି ନେଇଆ' । ବଳଦେବ ଦୌଡ଼ିଯାଇ ମାଳାଟି ଆଣି ଅଜାଙ୍କ ହାତରେ ଦେଇ କହିଲେ- ଅଜା, ଡେରି ହୋଇଯାଉଛି । ତମେ ଶୀଘ୍ର ମନ୍ତ୍ର ଜପ କର ।

ଓତାଏ ଚଟାପଟ୍ ଗାଧୋଇ ପକାଇଲେ । ତାପରେ ସେଇ ମାଳାକୁ ଧରି ମନ୍ତ୍ର ଜପ କରିବାକୁ ଲାଗିଲେ । ବଳଦେବ ମଝିରେ ମଝିରେ ଦାଣ୍ଡକୁ ଯାଇ ମେଘପବନ କେମିତି ଅଛି, ତାହା ଦେଖି ଆସୁଥାନ୍ତି । ଟିକିଏ ପରେ ବରଷା ପୂରା ଛାଡ଼ିଗଲା । ପବନ ଥମିଗଲା । ହେଲେ ଗାଁ ବାହାରେ ସବୁଆଡ଼େ ବର୍ଷାପବନ ସେମିତି ଲାଗି ରହିଥାଏ । ତାହା ଦେଖି ଗାଁ ଲୋକେ ଅବାକ୍ ହୋଇଗଲେ ।

ସେତେବେଳେ ସଞ୍ଜ ହୋଇଯାଇଥାଏ । ପିଲାମାନେ ମନଖୁସିରେ ବାଣ ଫୁଟାଇବାକୁ ଲାଗିଲେ । ଆଠଗଡ଼ ଦାଣ୍ଡ ହଜାର ହଜାର ଦୀପର ଆଲୁଅରେ ଉଜଳି ଉଠିଲା । ବଳଦେବ ସାଥି ପିଲାମାନଙ୍କୁ ପାଟି କରି କହିଲେ - ଦେଖିଲ, ଆମ ଅଜା ମେଘ ପବନକୁ କେମିତି ବନ୍ଦ କରିଦେଲେ !

ସତରେ ମନ୍ତ୍ର କଣ ନ କରେ ?

== 0 ==

# ଦୁର୍ଗା ସତ ମା' ହେଲେ

ଆଠଗଡ଼ ପିଲାଙ୍କ ଆତସବାଜି ଖେଳ ଶେଷ ହେଲା । ସେଠୁ ବଳଦେବ ଅଜାଙ୍କ ପାଖକୁ ଫେରିଆସି କହିଲେ - ଅଜା, ତୁମେ ବଢ଼ିଆ ମନ୍ତ୍ରଟିଏ ଜପ କଲ, ନୁହେଁ ? ମୁଁ ସେଇ ମନ୍ତ୍ର ଶିଖିବି । ମୋତେ ତାହା ବତାଇଦିଅ ।

ଅଜା ବୁଝିଥିଲେ, ତାହା ତନ୍ତ୍ରବିଦ୍ୟା । ତାହା ସାଧନ କରିବା ଲୋକର ପୁଅ ହୁଏନି, ହେଲେ ବି ବଞ୍ଚେନି । ସେଇ କାରଣରୁ ତାଙ୍କର ପୁଅ ନ ଥିଲା । ପ୍ରାଣଠାରୁ ଅଧିକ ପିୟ ବଳଦେବକୁ ସେ ମନ୍ତ୍ର ଶିଖାଇବେ କେମିତି ? ସେ ଅପୁତ୍ରିକ ହେବ । ସେଥିପାଇଁ ଏଣ୍ତୁଡ଼େଣ୍ତୁ କହି ସେ ବଳଦେବଙ୍କ ମନ ଭୁଲାଇବାକୁ ଚେଷ୍ଟା କଲେ । କିନ୍ତୁ ବଳଦେବ ନଛୋଡ଼ବନ୍ଧା । ମନ୍ତ୍ର ଶିଖିବା ପାଇଁ ଜିଦ୍ ଧରି ବସିଲେ ।

ଓଡାଏ ଆଉ କରିବେ କଣ ? କିଛି ଗୋଟାଏ ନ କଲେ ନାତିର ମନ ବୁଝିବନି । ସେ ଦିନ ତାଙ୍କ ଦେହ ଭଲ ଲାଗୁ ନ ଥାଏ । ରାତିରେ କିଛି ନ ଖାଇବାକୁ ଠିକ୍ କଲେ । ଗିନାଏ ଦୁଧ ପିଇଦେଲେ ଚଳିଯିବ । ଦୁଧ ଗିନାଏ ମଗାଇଲେ । ସେଠୁ ସେ ନାତିକୁ କହିଲେ - ଆରେ ବଳି, ଯାକୁ ନେଇ ପୂଜାଘରକୁ ଯା' । ଠାକୁରାଣୀଙ୍କ ମୁହଁ ପାଖରେ ଦୁଧଗିନା ଟେକିଧରି କହିବୁ,

''ଅଜା କହିଲେ, ତୁ ଦୁଧ ପି' ।''

ବଳଦେବ ସେମିତି କଲେ । ଆଶ୍ଚର୍ଯ୍ୟ କଥା ! ବଳଦେବ ଦେଖିଲେ, ଗିନାରେ ଦୁଧ ନାହିଁ । ସେ ଖାଲି ଗିନା ନେଇ ଅଜାଙ୍କ ପାଖକୁ ଦୌଡ଼ିଆସିଲେ । କହିଲେ - ଅଜା, ଠାକୁରାଣୀ ଗିନାକ ଦୁଧ ପିଇଦେଲା ।

ଅଜା କହିଲେ - ତୁ ପୁଣି ଯା' । ଠାକୁରାଣୀଙ୍କୁ କହିବୁ, ''ତୁ ତ ସବୁତକ ଦୁଧ ପିଇଦେଲୁ । ଅଜା ଆଜି ରାତିରେ କଣ ପିଇବେ ?''

ବଳଦେବ ଖାଲି ଗିନା ନେଇ ପୁଣି ଠାକୁରାଣୀଙ୍କ ପାଖରେ ଠିଆ ହୋଇ କହିଲେ - ତୁ ଦୁଧତକ ପିଇଦେଲୁ । ଅଜା ରାତିରେ କଣ ପିଇବେ ?

ସେତେବେଳର କଥା ଶୁଣିଲେ ଲୋମ ଟାଙ୍କୁରି ଉଠିବ । ହଠାତ୍ ପୂଜାଘରଟି ଆଲୋକରେ ଝଲସି ଉଠିଲା । ଦୁର୍ଗାମୂର୍ତ୍ତିଙ୍କ ଦେହରେ ଜୀବନ ସଞ୍ଚରି ଗଲା । ମୂର୍ତ୍ତିର ଡାହାଣ ହାତ ଆପେ ଉଠିଯାଇ ବଳଦେବଙ୍କୁ ଠାରି ଜଣାଇଲା - ମୋ ସ୍ତନ ପାଖକୁ ଗିନାଟି ନେଇ ଆ' ।

ବଳଦେବ ଦୁର୍ଗାଙ୍କ କଥା ମାନି ସେମିତି କଲେ । କି ଆଶ୍ଚର୍ଯ୍ୟ ! ଦୁର୍ଗାଙ୍କ ସ୍ତନରୁ କ୍ଷୀରର ଧାର ଛୁଟି ଆସିଲା । ତାହୁଁ ତାହୁଁ ଗିନା ଦୁଧରେ ଭରି ହୋଇଗଲା । ସେଠୁ ବଳଦେବ ଅଜାଙ୍କ ପାଖକୁ ଆସି କହିଲେ - ଅଜା, ଠାକୁରାଣୀ ଦୁଧ ଦେଲା । ହେଲେ ଏ ଗାଇଦୁଧ ନୁହେଁ, ତା ନିଜ ଦୁଧ ।

ଏବେ ଓତାଏ ବୁଝିଗଲେ, ମା' ଦୁର୍ଗା ତାଙ୍କ ନାତିକୁ

ଦେଖା ଦେଇଛନ୍ତି । ତାକୁ ଆଶୀର୍ବାଦ କରିଛନ୍ତି । ମା' ପୁଅକୁ ଦୁଧ ଦେଲା ଭଳି ନିଜ ସ୍ତନରୁ ଦୁଧ ଦେଇଛନ୍ତି । ଏ ମା'ଙ୍କର ପ୍ରସାଦ । ଏହି ପ୍ରସାଦ ପାଇଲେ ମଣିଷ ଦେବତା ଭଳି ବଡ଼ ହୋଇପାରିବ । ସେ ଚାହୁଁଥିଲେ, ତାଙ୍କ ନାତି ଦେବତା ପରି ମଣିଷଟିଏ ହେଉ । କାଳ କାଳ ପାଇଁ ନାଁ ରଖୁ । ତେଣୁ ସେ ନାତିକୁ କହିଲେ - ବଳି, ଦୁଧତକ ତୁ ପିଇଦେ । ମୋର କାହିଁକି ପିଇବାକୁ ମନ ହେଉନି ।

ଗିନାରେ ପାଟି ଲଗାଇ ବଳଦେବ ଦୁଧତକ ପିଇଦେଲେ । ପିଉ ପିଉ କି ଗୋଟାଏ ଶକ୍ତି ତାଙ୍କ ଦେହରେ ବିଜୁଳି ପରି ଖେଳିଗଲା । ଏମିତି କାହିଁକି ହେଲା, ବାଳକ ବଳଦେବ ବୁଝି ପାରିଲେ ନାହିଁ । ହେଲେ, ତାଙ୍କ ଅଜା କଥାଟା ବେଶ୍ ବୁଝିଥିଲେ ।

ସତ ମା' ହିଁ ନିଜ ଛୁଆକୁ କ୍ଷୀର ଖୁଆଏ । ବଳଦେବଙ୍କ ପାଇଁ ନିଜେ ଦୁର୍ଗା ହେଲେ ସତ ମା' । ଜଗତର ମା' ଦୁର୍ଗାଙ୍କୁ ନିଜ ମା' ଭଳି ପାଇବ କିଏ ? ପୁଣି, ଭାଗ୍ୟରେ ଥିଲେ ହିଁ ମିଳେ । କୋଟିଏରେ ଗୋଟିଏକୁ ବି ମିଳେ ନାହିଁ ।

ଧନ୍ୟ ବଳଦେବ ! ଧନ୍ୟ ତୁମ ଜୀବନ !!



(୧୩)

# ବାପକୁ ବଳି ବେଟା

ତ୍ରିପୁରାରି ଓତା ଦେଖିଲେ, ତାଙ୍କ ନାତି ଆଗର ବଳଦେବ ନୁହେଁ । ସେ ବହୁତ ବଦଳି ଯାଇଛି । ଥରେ ଶୁଣିଲେ କି ପଢ଼ିଲେ ଏବେ ସେ ପୂରା ମନେ ରଖିପାରୁଛି । ସଂସ୍କୃତ ବ୍ୟାକରଣ ଓ ସାହିତ୍ୟ କହୁ କହୁ ପୂରା ବୁଝିଯାଉଛି । ଓତାଏ ବୁଝିଗଲେ, ଦୁର୍ଗାଙ୍କ ପ୍ରସାଦ ପାଇବା ପରେ ବଳଦେବ ବୁଦ୍ଧିରେ ବିଚକ୍ଷଣ ହୋଇଉଠିଛି । ସେ ଭାବୁଥାନ୍ତି - ଦିନେ ଏଇ ନାତି ବାପାଅଜାଙ୍କର ନାଁ ରଖିବ, ଓଡ଼ିଶାର ଟେକ ରଖିବ ।

ଅଜାଘରେ ରହି ବଳଦେବ ଅନେକ ଶାସ୍ତ୍ର ପଢ଼ିଲେ । ଧୁରନ୍ଧର ପଣ୍ଡିତ ହେଲେ । କିଛି ଦିନ ପରେ ସେ ନିଜ ଘର ବଡ଼ଖେମୁଣ୍ଡିକୁ ଫେରିଗଲେ । ସେଠାରେ ସେ ଓଡ଼ିଆ ଭାଷାର ଅଳଙ୍କାର ଓ ଛାନ୍ଦ ବିଷୟରେ ଆଲୋଚନା କରିବାକୁ ଲାଗିଲେ ।

ହରିହର ଥିଲେ ବଳଦେବଙ୍କ ବଡ଼ ଭାଇ । ସେ ଦ୍ୱିତୀୟ ଥର ବିବାହ କଲେ ନାହିଁ । ଏଣେ ବଂଶରକ୍ଷା କରିବାକୁ ହେବ । ତେଣୁ ଉଜ୍ଜ୍ୱଳ ରଥ ସାନପୁଅ ବଳଦେବଙ୍କୁ ଶୀଘ୍ର ବିବାହ କରାଇବାକୁ ଠିକ୍ କଲେ । ଏଥିପାଇଁ ସେ ପୁରୀ ଗଲେ । ସେଠି ବାସେଳି ସାହିର ରାମକୃଷ୍ଣ ମିଶ୍ରଙ୍କୁ ଭେଟିଲେ । ତାଙ୍କର 'ରତ୍ନମଣି' ନାମକ ଅତି ସୁନ୍ଦର ଝିଅଟିଏ ଥିଲା । ତାଙ୍କ ପୁଅ ବଳଦେବ ସହିତ ଏ ଝିଅର ବିବାହ

ଠିକ୍ ହେଲା । ପନ୍ଦର ବର୍ଷ ବୟସରେ ବଳଦେବ ରତ୍ନମଣିଙ୍କୁ ବିବାହ କଲେ । ବିବାହ ବେଦିରେ ବରକନ୍ୟାଙ୍କ ରୂପ ଦେଖି ଲୋକମାନେ କହିଲେ - ବାଃ, ସତେ ଯେମିତି କନ୍ଦର୍ପ ଓ ରତି !

ଏ ବିବାହର ୫/୭ ମାସ ପରର କଥା । ବଳଦେବଙ୍କ ପରିବାର ଉପରେ ଚଡ଼କ ପଡ଼ିଲା । ତାଙ୍କ ବାପା ଉଜ୍ଜ୍ୱଳ ରଥ ମରିଗଲେ । ବଡ଼ଖେମୁଣ୍ଡି ରାଜା ଦେଇଥିବା ବୃତ୍ତିବାଡ଼ି ସବୁ ବନ୍ଦ ହୋଇଗଲା । ପରିବାର ଚଳିବ କେମିତି ? ବଡ଼ଭାଇ ହରିହର ଚିନ୍ତାରେ ପଡ଼ିଲେ । ଶେଷରେ ସେ ପରିବାର ସହ ଜଳନ୍ତର ରାଜ୍ୟକୁ ଚାଲିଗଲେ । ସେଠିକା ରାଜା ଥିଲେ ରାମଚନ୍ଦ୍ର ଛୋଟରାୟ । ସେ ଭାରି ସାହିତ୍ୟରସିକ ଥିଲେ । ହରିହରଙ୍କୁ ସେ ତାଙ୍କ ରାଜସଭାରେ ସ୍ଥାନ ଦେଲେ । ସେତେବେଳକୁ ବଳଦେବଙ୍କ ବୟସ ପ୍ରାୟ ଅଠର ବର୍ଷ ।

ଜଳନ୍ତରରେ ବଳଦେବ ପ୍ରଥମେ ଛୋଟ ଛୋଟ ସରଳ, ସୁନ୍ଦର କବିତାମାନ ରଚନା କଲେ । ତାହା ସମସ୍ତଙ୍କୁ ବେଶ୍ ଭଲ ଲାଗିଲା । ରାଜା ଦିନେ ତାଙ୍କ କବିତା ପଢ଼ି ଭାରି ଖୁସି ହେଲେ । ସେ ବଳଦେବଙ୍କୁ ରାଜସଭାକୁ ଡକାଇଲେ । ଭଞ୍ଜଙ୍କ କାବ୍ୟକବିତା ଚର୍ଚ୍ଚା କରିବାକୁ ସେ ତାଙ୍କୁ ଉତ୍ସାହ ଦେଲେ । ନୂଆ ନୂଆ କବିତା ଲେଖିବା ପାଇଁ ବଳଦେବଙ୍କୁ ବରାଦ ଦେଲେ ।

ଆଗେ ପଣ୍ଡିତମାନେ ଭାବୁଥିଲେ, କେବଳ ସଂସ୍କୃତ ଭାଷାରେ ହିଁ ଅଳଙ୍କାର ଦିଆଯାଇପାରିବ । ଓଡ଼ିଆ ଭାଷାରେ ତାହା ଦେଇ ହେବ ନାହିଁ । କିନ୍ତୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଆ ଭାଷାରେ ତାହା ପ୍ରୟୋଗ କରିଦେଲେ । ନ ହେବା କଥା ହେଲା । ସଂସ୍କୃତ ପଣ୍ଡିତମାନେ ଆଶ୍ଚର୍ଯ୍ୟ ହେଲେ । ଭାବିଲେ, ପ୍ରଭୁ ରାମଚନ୍ଦ୍ରଙ୍କ କୃପାରୁ ହିଁ ଭଞ୍ଜ ଏହା କରିପାରିଲେ ।

ବଳଦେବଙ୍କ ବହୁ ବର୍ଷ ଆଗରୁ ଭଞ୍ଜଙ୍କ ମୃତ୍ୟୁ ହୋଇଥିଲା । କିନ୍ତୁ ବଳଦେବଙ୍କ ସମୟରେ ଭଞ୍ଜଙ୍କ କାବ୍ୟକବିତାର ବହୁତ ଆଦର ଥିଲା । ସାଧାରଣ ଲୋକମାନେ ତାହା ପଢ଼ି ବୁଝିପାରୁ ନ ଥିଲେ । ତାଙ୍କ କାବ୍ୟକବିତା ନଡ଼ିଆ ପରି କଠିନ ଥିଲା । ନଡ଼ିଆର କତା ଛଡ଼ାଇ ତାର ଟାଣ ଖୋଳପାକୁ ଭାଙ୍ଗିଲେ ସିନା ତୁମେ ନଡ଼ିଆର ମିଠା ଚାଖିପାରିବ ?

ବଳଦେବ ଭଞ୍ଜକବିଙ୍କୁ ମନେ ମନେ ନିଜର ସାହିତ୍ୟ - ଗୁରୁ ରୂପେ ମାନି ନେଇଥିଲେ । କିନ୍ତୁ ଓଡ଼ିଆମାନଙ୍କୁ ସାହିତ୍ୟରେ ନଡ଼ିଆ ବଦଳରେ ଆମ୍ବର ସ୍ୱାଦ ଚଖାଇବାକୁ ସେ ଲାଗି ପଡ଼ିଲେ । ଆମ୍ବ ଏକ ରସାଳ ଫଳ । ଖାଇଲେ ପାଟିକୁ ମିଠା ଲାଗେ । ତାକୁ ସିଧା ଚୁଷି ଖାଇ ହୁଏ । ଓଡ଼ିଆ ଛାନ୍ଦ, ଚଉତିଶା ଆଦି ସେମିତି ସରଳ ଓ ମନଛୁଆଁ ହେବା ଦରକାର । ବଳଦେବ ମନକୁ ଟାଣ କଲେ । ଲେଖନୀ ଚଳାଇଲେ ।

ଉପେନ୍ଦ୍ର ଭଞ୍ଜଙ୍କ ଅଧିକାଂଶ କାବ୍ୟକବିତାରେ ସ୍ତ୍ରୀପୁରୁଷଙ୍କ ପ୍ରେମ ବିଷୟରେ ବର୍ଣ୍ଣନା ଅଛି । ବଳଦେବ ତାଙ୍କୁ ଅନୁସରଣ କରିଥିଲେ, ସତ । କିନ୍ତୁ ଏହାଙ୍କ ବର୍ଣ୍ଣନାରେ ସଂଯମ ଅଛି । ପୁଣି, ବଳଦେବ ସରଳ, ମଧୁର ସଙ୍ଗୀତ ରଚନା କରୁଥିଲେ । ତାହା ଶୁଣିବାକୁ ଭଲ ଲାଗୁଥିଲା । ଏଥିରେ ଖୁସି ହୋଇ ଜଳନ୍ତରର ରାଜା ତାଙ୍କୁ 'କବିସୂର୍ଯ୍ୟ' ଉପାଧି ଦେଲେ । ଦରବାରରେ ବଳଦେବଙ୍କ ମୁଣ୍ଡରେ ପାଟଶାଢ଼ୀ ବାନ୍ଧିଦେଲେ ।

ବଳଦେବ କବି ଥିଲେ । ଏବେ ହେଲେ କବିସୂର୍ଯ୍ୟ । ଉପାଧି ପାଇବାରୁ ତାଙ୍କର ଉତ୍ସାହ ବଢ଼ିଲା । ସେ ଅତି ମନୋହର କବିତାମାନ ଲେଖିବାକୁ ଲାଗିଲେ । ସଂସ୍କୃତରେ ବି ସେ ଅନେକ ଉଚ୍ଚ ଧରଣର

ସାହିତ୍ୟ ରଚନା କରିଥିଲେ । ଦୁଃଖର କଥା, ସେସବୁ ନ ମିଳିବାରୁ ପ୍ରକାଶ ପାଇପାରିଲା ନାହିଁ ।

'ଲାବଣ୍ୟବତୀ' ଭଞ୍ଜକବିଙ୍କ ଏକ ଶ୍ରେଷ୍ଠ କାବ୍ୟ । କବିସୂର୍ଯ୍ୟ ଏ ପ୍ରକାର ଏକ କାବ୍ୟ ଲେଖିବାକୁ ଇଚ୍ଛା କଲେ । ସେତେବେଳେ ଚଳନ୍ତର ରାଜାଙ୍କ 'ଚନ୍ଦ୍ରକଳା' ନାମରେ ଏକ ପୋଷା ଝିଅ ଥିଲା । ଅପସରୀ ପରି ତା ରୂପ । ତା ନାଁ ଅନୁସାରେ କବିସୂର୍ଯ୍ୟ 'ଚନ୍ଦ୍ରକଳା' କାବ୍ୟ ଲେଖିବାକୁ ଲାଗିଲେ । ତାର ଭାଷା ଓ ଭାବ ଚମତ୍କାର ଥିଲା । ତାହା ଶୁଣି ସମସ୍ତେ କବିଙ୍କୁ ଧନ୍ୟ ଧନ୍ୟ କଲେ ।

ଏ ଭିତରେ ଚନ୍ଦ୍ରକଳାର ଅକାଳ ମୃତ୍ୟୁ ହେଲା । ଏଥିରେ ରାଜା ଓ କବିସୂର୍ଯ୍ୟ ଦୁଃଖରେ ଭାଙ୍ଗି ପଡ଼ିଲେ । ସେଥିପାଇଁ 'ଚନ୍ଦ୍ରକଳା' କାବ୍ୟ ପୂର୍ଣ୍ଣ ହୋଇପାରିଲା ନାହିଁ । ରାଜା ବି ନିଜେ ରାଜ୍ୟ ଶାସନ ବୁଝିଲେ ନାହିଁ । କବିସୂର୍ଯ୍ୟଙ୍କ ଉପରେ ବିଶ୍ୱାସ ଥିବାରୁ ତାଙ୍କୁ ରାଜ୍ୟର ମନ୍ତ୍ରୀ କରିଦେଲେ । କବିସୂର୍ଯ୍ୟଙ୍କ ଶାସନରେ ରହି ପ୍ରଜାମାନେ ରାମରାଜ୍ୟର ସୁଖ ପାଇଲେ ।

କବିସୂର୍ଯ୍ୟଙ୍କ ବାପା ଜଣେ ବଡ଼ ପଣ୍ଡିତ ଓ କବି ଥିଲେ । କିନ୍ତୁ କବିସୂର୍ଯ୍ୟ ତାଙ୍କଠାରୁ ବହୁତ ଅଧିକ ସାହିତ୍ୟ ରଚନା କଲେ । ବହୁତ ନାଁ କଲେ । ବାପକୁ ବେଟା ବଳିଗଲେ ।



# ତୁମେ ଗୋଟିଏ ସାପ !

ତୁଣ୍ଡ ବାଇଦ ସହସ୍ର କୋଶ । କବିସୂର୍ଯ୍ୟଙ୍କ କାବ୍ୟକବିତା କଥା ଦୂରରୁ ଦୂରକୁ ବ୍ୟାପିଲା । ସେତେବେଳେ ଗଞ୍ଜାମର ଆଠଗଡ଼ରେ ରାଜା ଥିଲେ ବାଲୁକେଶ୍ୱର ହରିଚନ୍ଦନ । ରାଜା ନିଜେ ଭଲ ସଂସ୍କୃତ ଜାଣିଥିଲେ । ତା'ଛଡ଼ା ଓଡ଼ିଆ ସଙ୍ଗୀତ ଓ ସାହିତ୍ୟର ବହୁତ ଆଦର କରୁଥିଲେ । ତାଙ୍କ ରାଜସଭାକୁ ଆସିବାକୁ ସେ କବିସୂର୍ଯ୍ୟଙ୍କୁ ବାରମ୍ବାର ନିମନ୍ତ୍ରଣ କଲେ ।

ଶେଷରେ କବିସୂର୍ଯ୍ୟ ଜଳନ୍ତର ରାଜାଙ୍କଠାରୁ ବିଦାୟ ନେଇ ଆଠଗଡ଼ ଆସିଲେ । ଏ ସେହି ଆଠଗଡ଼, ତାଙ୍କ ଅଜାଘର ଗାଁ । ଏଇଠି ତାଙ୍କ ବାଲ୍ୟଲୀଳା, ତାଙ୍କ ପାଠପଢ଼ା । ଏଇଠି ସେ ମା' ଦୁର୍ଗାଙ୍କ ଆଶୀର୍ବାଦ ପାଇଥିଲେ । ଏବେ ଏଇଠି ସେ ନିତି ନୂଆ ନୂଆ କବିତା ରଚନା କରି ରାଜାଙ୍କୁ ଶୁଣାଇବାକୁ ଲାଗିଲେ । ତାହା ଶୁଣି ରାଜା ବହୁତ ଖୁସି ହେଉଥିଲେ ।

କବିସୂର୍ଯ୍ୟଙ୍କ ଝିଅର ବାହା ହେବା ବୟସ ହୋଇଥାଏ । ଝିଅ ପାଇଁ ବର ଖୋଜିବାକୁ କବିସୂର୍ଯ୍ୟ ପୁରୀ ଯିବାକୁ ଚାହିଁଲେ । କିଛି ଦିନ ପରେ ରାଜାଙ୍କ ଅନୁମତି ନେଇ ସେ ପୁରୀ ଗଲେ ।

ତାଙ୍କର ପୁରୀ ଯିବାର ଆଉ ଏକ କାରଣ ଥିଲା । ପୁରୀର ଗଜପତି ମହାରାଜା ଥିଲେ ଓଡ଼ିଶାର ସବୁ ରାଜାଙ୍କ ମଉଡ଼ମଣି । ତାଙ୍କଠାରୁ 'କବିସୂର୍ଯ୍ୟ' ଉପାଧି ପାଇଲେ ସବୁ ରାଜାମାନେ ତାହା ମାନିନେବେ । ଏଇ ଉଦ୍ଦେଶ୍ୟରେ ସେ ରାଜାଙ୍କୁ ଭେଟିବା ପାଇଁ ଚେଷ୍ଟା କରୁଥାନ୍ତି । ନୂଆ ନୂଆ ସଂସ୍କୃତ ଶ୍ଲୋକ ଲେଖି ମହାସୁଆରଙ୍କଦ୍ୱାରା ରାଜାଙ୍କ ପାଖକୁ ପଠାଉଥାନ୍ତି । ହେଲେ ରାଜସଭାର ଅହଙ୍କାରୀ ପଣ୍ଡିତମାନେ ତାଙ୍କ ଶ୍ଳୋକସବୁ ପୁରୁଣା ବୋଲି କହିଦିଅନ୍ତି ।

କବିସୂର୍ଯ୍ୟ ଦେଖିଲେ, ମଣିଷ ତାଙ୍କୁ ସାହାଯ୍ୟ କରିପାରିବ ନାହିଁ । ପ୍ରଭୁ ଜଗନ୍ନାଥ ହିଁ ଭରସା । ଏଣିକି ସେ ନିତି ନୂଆ ନୂଆ ଜଣାଣ ଲେଖିବାକୁ ଲାଗିଲେ । ନିତି ବଡ ଦେଉଳକୁ ଯାଆନ୍ତି ଓ ଜଣାଣ ଗାଆନ୍ତି । ସେ ଅତି ସୁନ୍ଦର ଭାବେ ସଙ୍ଗୀତ ଗାଇ ପାରୁଥିଲେ । ଭଜନର ଭାବ ବି ଚମତ୍କାର ଥାଏ । ସତେ ଅବା ଅମୃତ ଝରୁଛି । ମନ୍ଦିରକୁ ଆସିଥିବା ଲୋକମାନେ ତାଙ୍କୁ ସତେ ଯେମିତି ପିଇଯାଉଥିଲେ ।

ଗଜପତି ମୁକୁନ୍ଦଦେବ ପ୍ରତିଦିନ ସକାଳେ ଆରତି ଦର୍ଶନ ପାଇଁ ମନ୍ଦିରକୁ ଆସୁଥିଲେ । ଏଇ ସମୟରେ ରାଜାଙ୍କୁ ଭେଟିବା ପାଇଁ କବିସୂର୍ଯ୍ୟ ଆଶା କରୁଥିଲେ । କିନ୍ତୁ ତାଙ୍କ ଆଶା ପୂରଣ ହେଲା ନାହିଁ । କବିସୂର୍ଯ୍ୟ ମନପ୍ରାଣ ଦେଇ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଥିଲେ । ତଥାପି ମହାପ୍ରଭୁ ତାଙ୍କ ଗୁହାରି ଶୁଣୁନାହାନ୍ତି କାହିଁକି ? ଜଗନ୍ନାଥଙ୍କଠାରେ କବିସୂର୍ଯ୍ୟଙ୍କର ଅଭିମାନ ହେଲା । ପ୍ରଭୁଙ୍କୁ ସାପ ସହ ତୁଳନା କରି ସେ ଲେଖିଲେ ଚମତ୍କାର ଜଣାଣଟିଏ । ତାକୁ ଠାକୁରଙ୍କ ଆଗରେ ଗାଇଲେ ।

ସର୍ପ ଜଣାଣର ପ୍ରଥମ ପାଦଟି ଏହିପରି :

ବାଧିଲା ଜାଣି କ୍ଷମା          କର ନୋହିଲେ ରମା-
ରମଣ ଦଣ୍ଡେ ଦିଅ ଟାଳି,
ତୁମ୍ଭଙ୍କୁ, ଜଗନ୍ନାଥ,          ଆଜ ମୋ ମନୋରଥ
ଭରତି କରିଦେବି ଗାଳି, ହେ କୃପାନିଧି ।
କରୁଣାସିନ୍ଧୁ ବୋଲିକରି          କହନ୍ତି ବୁଧେ ଡରିମରି
କାଳସର୍ପ ଆପଣ          କବଳ କର ପ୍ରାଣ-
ପବନମାନଙ୍କୁ ସବୁରି, ହେ କୃପାନିଧି ।୧।

ଜଣାଣର ଭାଷା ଓ ଭାବ କି ଚମତ୍କାର ! ତାର ଭାବ ଏହିପରି :

ହେ ଜଗନ୍ନାଥ, ମୋତେ ବହୁତ ବାଧିଲାଣି । ଆଉ ସମ୍ଭାଳି ପାରୁନି । ସେଥିପାଇଁ ତୁମକୁ ଗାଳି ଦେଉଛି । ସତରେ ତୁମେ ଗୋଟିଏ ସାପ ! ମୁଁ ଏଠି ତାର ପ୍ରମାଣ ଦେଉଛି ।

ସାପକୁ ଚକ୍ରୀ କହନ୍ତି । ତୁମର ଚକ୍ର ଥିବାରୁ ତୁମ ନାଁ ବି ଚକ୍ରୀ । ସାପର ଗୋଟିଏ ନାଁ ହେଲା କୁଣ୍ଡଳୀ । ତୁମର ମକର କୁଣ୍ଡଳ ଥିବାରୁ ତୁମେ ବି କୁଣ୍ଡଳୀ । ସାପର ଗୋଡ଼ ଦେଖାଯାଏନି । ତେଣୁ ତାକୁ ଗୂଢ଼ପଦ କହନ୍ତି । ତୁମ ପାଦକୁ ତ ବ୍ରହ୍ମା ବି ଦେଖିପାରି ନାହାନ୍ତି । ସାପ ନୁହଁ ତ ଆଉ କଣ ?

ସାପର କାନ ନାହିଁ । ସେ କୁଆଡ଼େ ଆଖିରେ ଶୁଣେ । ତୁମର କାନ କାହିଁ ? ତେଣୁ ତୁମେ ସାପ ଭଳି ଆଖିରେ ହିଁ ଶୁଣୁଛ । ସାପର ଆଉ ଗୋଟିଏ ନାଁ ଭୋଗୀ । ତୁମେ ଏଠି ଷାଠିଏ ପଉଟି ଭୋଗ ଗିଳି ବସିଛ । ଏ କଣ ମିଛ କଥା ? ତୁମେ ଭୋଗୀ ନୁହଁ ?

ଆଉ କହିବି ? ତୁମେ ପିଲାବେଳେ ବ୍ରଜରେ ସାପ ଭଳି ଗୁରୁଣ୍ଡି ଗୁରୁଣ୍ଡି ଚାଲୁ ନ ଥିଲ ? ନାହିଁ ବୋଲି ତୁମ ଚକାଆଖି

ଛୁଇଁ କହିଲ ଦେଖି । ସାପ ମନ୍ତ୍ରରେ ବଶ ହୁଏ । ମନ୍ତ୍ର ପଢ଼ିଲେ ତୁମେ କଣ ଭକ୍ତର ଅଧୀନ ହୁଅନି ?

ହେଉ, ବହୁତ ଗାଳି ଦେଲି । ମୋତେ କ୍ଷମା କର, ପ୍ରଭୁ । ମୁଁ ତ ତୁମ ଚାକର । ତୁମଠାରେ ମୋର ଏତିକି ମାଗୁଣି । ମଲା ପରେ ମୁଁ ଯେମିତି ଯମଦୁଆର ନ ମାଡ଼େ, ତା' ବ୍ୟବସ୍ଥା କରିବ ।

ଏହାପର ଘଟଣା । ଦିନେ ମୁକୁନ୍ଦଦେବ କବିସୂର୍ଯ୍ୟଙ୍କ କବିତା ଶୁଣି ବହୁତ ଖୁସି ହୋଇଗଲେ । ସେ ମନେ ମନେ କବିଙ୍କୁ ପ୍ରଶଂସା କଲେ । ତା'ପର ଦିନ ସକାଳେ ମନ୍ଦିରରେ କବିସୂର୍ଯ୍ୟ ତାଙ୍କୁ ଦେଖା କରିବେ ବୋଲି ମହାସୁଆରଙ୍କ ହାତରେ ଖବର ଦେଲେ ।

କବିସୂର୍ଯ୍ୟ ବୁଝିଗଲେ, ଜଗନ୍ନାଥ ତାଙ୍କ ଗୁହାରି ଶୁଣିଛନ୍ତି । ତାପର ଦିନ ମନ୍ଦିରରେ ରାଜାଙ୍କ ସହିତ କବିସୂର୍ଯ୍ୟଙ୍କ ଭେଟ ହେଲା । ପରିଚୟ ବି ହେଲା । ରାଜା କହିଲେ - ତାହା ହେଲେ ତୁମେ ସେଇ କବିସୂର୍ଯ୍ୟ ? ଆଚ୍ଛା, ଲକ୍ଷ୍ମୀ ଓ ଜଗନ୍ନାଥଙ୍କ ବିଷୟରେ କବିତାଟିଏ ଗାଇ ଶୁଣାଇଲ ଦେଖି ।

କବିସୂର୍ଯ୍ୟ ତ ମୁହେଁ ମୁହେଁ କବିତା ରଚନା କରିପାରୁଥିଲେ । ସେ ସାଙ୍ଗେ ସାଙ୍ଗେ ଗାଇଲେ :

ଧନ୍ୟ ହେ ନବକିଶୋର ସତୀ ଧୃତି ଧନଚୋର
ନିଖିଳ ନାଗର ଶିରୋମଣି,
ତୁମ୍ଭ ସଦୟ ମାନସ କୁଳିଶରୁ କରକଶ
ବୋଲି ନ ଥିବାରୁ ଆମ୍ଭେ ଜାଣି, ହେ ଶ୍ୟାମବନ୍ଧୁ
ଆମ୍ଭ ସଖୀ ଲଭିଲା କି ଦଶା ଦମ୍ଭେ ଉଭା ହେବା ନାହିଁ ଆଶା
ଦେଲେ ତରୁଣ କେଶରୀ କୋଳେ କୁରଙ୍ଗ କିଶୋରୀ
ଦିଶଇ କି ବଞ୍ଚିବା ଭରସା, ହେ ଶ୍ୟାମବନ୍ଧୁ ।୧।

ଜଣାଣଟି ଶୁଣି ମହାରାଜା ଓ ସେଠି ଥିବା ପଣ୍ଡିତମାନଙ୍କ ଆଖି କପାଳରେ ଖୋସି ହୋଇଗଲା । ରାଜା ଖୁସି ହୋଇ କବିଙ୍କୁ କହିଲେ - ଆପଣ ଜଳନ୍ତର ରାଜାଙ୍କଠାରୁ କବିସୂର୍ଯ୍ୟ ଉପାଧି ପାଇଛନ୍ତି । ଆମ୍ଭଠାରୁ ଗୋଟିଏ ନୂଆ ଉପାଧି ନିଅନ୍ତୁ ।

କବିସୂର୍ଯ୍ୟ କହିଲେ - ମଣିମା, ମୋର କବିସୂର୍ଯ୍ୟ ଉପାଧି ସବୁଠାରେ ପ୍ରଚାରିତ ହୋଇଗଲାଣି । ସେଇ କବିସୂର୍ଯ୍ୟ ଉପାଧି ଛାମୁଙ୍କଠାରୁ ମିଳିଲା ବୋଲି ଆଦେଶ ହେଉ ।

ରାଜା ସାଙ୍ଗେ ସାଙ୍ଗେ କୋଠ ଭଣ୍ଡାରରୁ ପାଟଶାଢ଼ୀ ମଗାଇ ଆଣିଲେ । ତା'ପରେ ସେ ନିଜ ହାତରେ କବିସୂର୍ଯ୍ୟଙ୍କ ମୁଣ୍ଡରେ ପଗଡ଼ି ବାନ୍ଧିଦେଲେ । ଉପାଧି ଦେଲେ 'କବିସୂର୍ଯ୍ୟ ରାୟଗୁରୁ ମହାପାତ୍ର' । ଏହିପରି ଜଳନ୍ତରର କବିସୂର୍ଯ୍ୟ ସାରା ଓଡ଼ିଶାର କବିସୂର୍ଯ୍ୟ ହେଲେ ।

ଏହାପରେ ରାଜା ଅନ୍ୟ ଦେବଦେବୀଙ୍କୁ ଦର୍ଶନ କରି ସିଂହଦ୍ୱାରରେ ପହଞ୍ଚିଲେ । ଏ ଭିତରେ କବିସୂର୍ଯ୍ୟ ସଂସ୍କୃତ ଶ୍ଳୋକର ବାକୀ ତିନି ଧାଡ଼ି ତାଳପତ୍ରରେ ଲେଖି ରାଜାଙ୍କୁ ଉପହାର ଦେଲେ । ରାଜା ବୁଝିଗଲେ, କବିସୂର୍ଯ୍ୟ ସଂସ୍କୃତ ଓ ଓଡ଼ିଆରେ ପ୍ରକୃତରେ ସମସ୍ତଙ୍କଠାରୁ ବଡ଼ କବି । କବିସୂର୍ଯ୍ୟ ଉପାଧି ପାଇଁ ସେ ଯୋଗ୍ୟ ।



# ଚୁଗୁଲିଆଙ୍କୁ ଚେଁଖେ

କବିସୂର୍ଯ୍ୟ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଓଡ଼ିଆ ଭଜନ ମୁହେଁ ମୁହେଁ ରଚନା କରି ରାଜାଙ୍କୁ ଶୁଣାଇଲେ । ତା'ପରେ ସଂସ୍କୃତ ଶ୍ଳୋକର ପାଦ ପୂରଣ କରି ରାଜାଙ୍କୁ ଦେଲେ । ସେଥିପାଇଁ ପୁରୀ ରାଜା ମୁକୁନ୍ଦଦେବ ତାଙ୍କ ଉପରେ ବହୁତ ସନ୍ତୁଷ୍ଟ ହେଲେ । ସେ ତାଙ୍କୁ ତା'ପର ଦିନ ରାଜସଭାକୁ ଡକାଇବେ ବୋଲି କହି ନଅରକୁ ଚାଲିଗଲେ ।

ଏଣେ ପୁରୀ ରାଜସଭାର କେତେକ ପଣ୍ଡିତ କବିସୂର୍ଯ୍ୟଙ୍କ ଓଡ଼ିଆ ଓ ସଂସ୍କୃତ ଜ୍ଞାନ ଲାଗି ବହୁତ ପ୍ରଶଂସା କଲେ । ଆଉ କେତେକ ପଣ୍ଡିତ ତାଙ୍କୁ ଈର୍ଷା କରିବାକୁ ଲାଗିଲେ । ତା'ପର ଦିନ କବିସୂର୍ଯ୍ୟଙ୍କୁ ରାଜସଭାକୁ ଡକାଇବେ ବୋଲି ରାଜା କହିଲେ । ସେଠି କେତେ ଜଣ ଚୁଗୁଲିଆ ପଣ୍ଡିତ କହିଲେ - ଓଡ଼ିଆ ଭାଷାରେ ଗୀତ କେତେ ପଦ ଯୋଡ଼ିଦେଲେ ବଳଦେବ ରଥ ପଣ୍ଡିତ ହୋଇପାରିବେ ନାହିଁ । ତା' ଛଡ଼ା ଏଇ ଦକ୍ଷିଣୀ ଲୋକଟା ପୁରୁଣା ଶ୍ଳୋକ କେତେ ଘୋଷି ଆସି ଛାମୁଙ୍କ ଆଗରେ ଗାଇ ଯାଉଛନ୍ତି ।

ରାଜା କବିସୂର୍ଯ୍ୟଙ୍କ ଶ୍ଳୋକର ପରୀକ୍ଷା ନେଲେ । ଏଠି ଗୋଟିଏ ଅସୁବିଧା ଦେଖାଗଲା । ରାଜସଭାରେ କେତେ ଜଣ ଶ୍ରୁତିଧର ପଣ୍ଡିତ ଥିଲେ । ସେମାନେ ଯାହା ଥରେ ଶୁଣୁଥିଲେ,

ତାହା ମନେ ରଖି ପାରୁଥିଲେ । କବିସୂର୍ଯ୍ୟଙ୍କ ଶ୍ଳୋକକୁ ସେମାନେ ଅବିକଳ ଆବୃତ୍ତି କରିଦେଲେ । ଏଥିରେ ରାଜାଙ୍କ ମନ ମାନିଲା ନାହିଁ । ସେ ଈର୍ଷାପର ପଣ୍ଡିତମାନଙ୍କ କାରସାଦି ବୁଝିପାରିଲେ । ସେ କହିଲେ - କବିସୂର୍ଯ୍ୟ ରାଜସଭାକୁ ଆସନ୍ତୁ । ଏଠାରେ ଆମେ ତାଙ୍କ ପାଣ୍ଡିତ୍ୟ ପରୀକ୍ଷା କରି ଦେଖିବା ।

ଏହାପରେ ରାଜା ମୁକୁନ୍ଦଦେବ କବିସୂର୍ଯ୍ୟଙ୍କୁ ରାଜସଭାକୁ ଡକାଇଲେ । ସେ ରାଜସଭାରେ ପ୍ରବେଶ କରୁ କରୁ ରାଜା ତାଙ୍କୁ ପ୍ରଣାମ କଲେ । ଏତିକିବେଳେ କବିସୂର୍ଯ୍ୟଙ୍କ ମୁହଁରୁ ଛୁଟି ଚାଲିଲା ଆଶୀର୍ବାଦ ଶ୍ଳୋକ । ଦୀର୍ଘ ଅଧ ଘଣ୍ଟା ଧରି ମୁହେଁ ମୁହେଁ ଶ୍ଳୋକ ରଚନା କରି ବୋଲୁଥାନ୍ତି । ତାହା ଦେଖି ପଣ୍ଡିତମାନେ ଅବାକ୍ ହୋଇଗଲେ ।

ରାଜା କବିସୂର୍ଯ୍ୟଙ୍କୁ ଏକ ବିଶିଷ୍ଟ ଆସନ ଦେଲେ । ଏଥିରେ ଚୁଗୁଲିଆମାନେ ଅଧିକ ହିଂସାରେ ଜଳିଗଲେ । ଏଇ ପଣ୍ଡିତମାନେ କବିସୂର୍ଯ୍ୟଙ୍କୁ ନାନା ଜଟିଳ ପ୍ରଶ୍ନ ପଚାରିବାକୁ ଲାଗିଲେ । କବିସୂର୍ଯ୍ୟ ଟିକିଏ ବି ବିଚଳିତ ନ ହୋଇ ହସ ହସ ମୁହଁରେ ସେଗୁଡ଼ିକର ଉତ୍ତର ଦେଲେ । ଏମିତି କୌଶଳରେ ଉତ୍ତର ଦେଲେ ଯେ, ତାଙ୍କୁ ଅଧିକ ପ୍ରଶ୍ନ ପଚାରିବାକୁ ଆଉ କେହି ସାହସ କଲେ ନାହିଁ ।

ଏଣିକି କବିସୂର୍ଯ୍ୟ ପ୍ରତିଦିନ ପୁରୀ ରାଜସଭାକୁ ଆସିଲେ । ନିତି ନୂଆ ନୂଆ ଶ୍ଳୋକ ଓ କବିତା ଶୁଣାଉଥାନ୍ତି । ରାଜସଭାର ପଣ୍ଡିତମାନେ ତାଙ୍କ ପାଣ୍ଡିତ୍ୟ ଓ କବି ପ୍ରତିଭାରେ ମୁଗ୍ଧ ହୋଇଗଲେ । ଚୁଗୁଲିଆ ପଣ୍ଡିତମାନଙ୍କ ମୁହଁ ବନ୍ଦ ହୋଇଗଲା । ସେମାନେ ବି କବିସୂର୍ଯ୍ୟଙ୍କ ପ୍ରଶଂସା କରିବାକୁ ଲାଗିଲେ । ପୁରୀ ରାଜା କବିସୂର୍ଯ୍ୟଙ୍କୁ ଏକ ସନନ୍ଦ ଲେଖି ଦେଲେ । ତାହାଦ୍ୱାରା ଶ୍ରୀମନ୍ଦିରରେ

ଓ ରାଜଦ୍ୱାରରେ ତାଙ୍କର ସମ୍ମାନ ବହୁତ ବଢ଼ିଗଲା ।

କବିସୂର୍ଯ୍ୟ ଚୁଗୁଲିଆ ପଣ୍ଡିତମାନଙ୍କ କଥା ମନେ ରଖିଥାନ୍ତି । ସେମାନଙ୍କୁ ଚେଁଖେ ନ ଦେଇ ଛାଡ଼ିଲେ ନାହିଁ । ସେ ରାଜାଙ୍କ ଆଗରେ କବିତା ଛଳରେ ଯାହା କହିଲେ, ଚୁଗୁଲିଆଙ୍କୁ ତାହା ନିଆଁଖୁଣ୍ଟା ଚେଁଖିଲା ଭଳି ଲାଗିଥିବ । ଏମିତିକା ଚେଁଖା କବିତାରୁ ପଦେ :

ପ୍ରିୟ ସଖି, କି ବୁଦ୍ଧି କରିବି ଗୋ,<br>
ଗଲିଣି ଲାଜେ ମୁଁ ସଢ଼ି,<br>
କେଉଁ ଗୁଣେ ରସି ନିକୁଞ୍ଜବିଳାସୀ<br>
ଅଛନ୍ତି ମୋ ସ୍ନେହେ ବୁଡ଼ି ।

ଏହି କବିତାର ଭିତିରି ଅର୍ଥ ହେଲା : ରାଜସଭାରେ ଏତେ କବି, ପଣ୍ଡିତ ଥାଇ ସୁଦ୍ଧା ରାଜା ମୋତେ ଏତେ ଭଲ ପାଉଛନ୍ତି କାହିଁକି ? ତାର କାରଣ ନିଶ୍ଚୟ ଥିବ । ରାଜା ନିଜେ ଗୁଣବାନ୍ । ତେଣୁ ସେ ପ୍ରକୃତ ଗୁଣବାନ୍ ଲୋକର ଅଧିକ ଆଦର କରୁଛନ୍ତି ।

କେବଳ ଏତିକି ନୁହେଁ । ପୁରୀରୁ ବିଦାୟ ନେଇ ଗଲାବେଳେ କବିସୂର୍ଯ୍ୟ ରାଜାଙ୍କୁ ଏକ ବିଦାୟ ଗୀତ ଶୁଣାଇଥିଲେ । ସେଥିରେ ସେ ଚୁଗୁଲିଆମାନଙ୍କୁ ଜଟିଳା କୁଟିଳା ନାମ ଦେଇ ବେଶ୍ ଚେଁଖେ ମାରିଥିଲେ । ସେ କହିଥିଲେ :

ହେ ବଂଶୀପାଣି, ଏବେ ହେଉ ଶ୍ରୀଛାମୁରୁ ମେଲାଣି ହେ ।

x x x

ଜଟିଳା କୁଟିଳା ରୀତି ଜାଣିଛ ତ ଶିରୀପତି,<br>
ତୁମ୍ଭେ ଏକା ମୋର ଗତି ସୁପଥର ଶ୍ରେଣୀ ହେ ।

କବିସୂର୍ଯ୍ୟ ବହୁତ ଉପହାର ସହ ରାଜାଙ୍କଠାରୁ ବିଦାୟ ନେଲେ । ଏହାପରେ ସେ କିଛି ଦିନ ଜଳନ୍ତରରେ ରହିଲେ । ଏ ସମୟରେ ଆଠଗଡ଼ ରାଜା ତାଙ୍କୁ ସପରିବାର ଆଠଗଡ଼ରେ ରହିବାକୁ ବାରମ୍ବାର ନିମନ୍ତ୍ରଣ କଲେ । ଏତିକିବେଳେ ଜଳନ୍ତରର ରାଜା ଗୋପାଳ ଛୋଟରାୟଙ୍କ ମୃତ୍ୟୁ ଘଟିଲା । ତେଣୁ କବିସୂର୍ଯ୍ୟଙ୍କ ଜଳନ୍ତର ମୋହ ତୁଟିଗଲା । କିଛି ଦିନ ପରେ ସେ ଜଳନ୍ତର ଛାଡ଼ି ସପରିବାର ଆଠଗଡ଼ ଚାଲିଆସିଲେ ।

ଆଠଗଡ଼ର ଯୁବକ ରାଜା ବାଲୁକେଶ୍ୱର ଜଗଦ୍ଦେବ ହରିଚନ୍ଦନ କବିସୂର୍ଯ୍ୟଙ୍କୁ ବହୁତ ଶ୍ରଦ୍ଧା କରୁଥିଲେ । କବିସୂର୍ଯ୍ୟ ରହିବା ପାଇଁ ସେ ତାଙ୍କର ଉଦ୍ୟାନ ଗୃହଟି ଦେଲେ । ତାଙ୍କ ପାଇଁ ବାଡ଼ିବୃତ୍ତି ଖଞ୍ଜିଦେଲେ । କବିସୂର୍ଯ୍ୟ ଅତି ଆନନ୍ଦରେ ସେଠାରେ ରହିଲେ । ରାଜା ନିଜେ ଗୁଣୀ ଥିଲେ ଏବଂ ଗୁଣୀ ଲୋକର ଆଦର କରୁଥିଲେ । ଆଠଗଡ଼ରେ ରହିବା ସମୟରେ କବିସୂର୍ଯ୍ୟ ହଜାର ହଜାର କବିତା ରଚନା କରି ଶୁଣାଇଥିଲେ । ତାଙ୍କ ଯୋଗୁଁ ଆଠଗଡ଼ ରାଜସଭା ଓଡ଼ିଶାରେ ଭାରି ନାଁ କରିଥିଲା ।

ଆଠଗଡ଼ରେ ଥିବାବେଳେ କବିସୂର୍ଯ୍ୟ ନିତି ନୂଆ ନୂଆ କବିତା ରଚନା କରି ଶୁଣାଉଥିଲେ । ସେସବୁ ଆଜି ନାହିଁ । ଅଳ୍ପ କିଛି ଆମ ଦୃଷ୍ଟିକୁ ଆସିଛି । ପୁରୀ ପରି ଆଠଗଡ଼ ରାଜସଭାର କେତେକ ପଣ୍ଡିତ କବିସୂର୍ଯ୍ୟଙ୍କୁ ଈର୍ଷା କରିବାକୁ ଲାଗିଲେ । ତାଙ୍କୁ ନାନା ପ୍ରକାରେ ନିନ୍ଦା କରୁଥାନ୍ତି । ବେଳେ ବେଳେ ତାଙ୍କ ବିରୋଧରେ ରାଜାଙ୍କୁ କହୁଥାନ୍ତି । କିନ୍ତୁ ରାଜା ଏଇ ଚୁଗୁଲିଆଙ୍କ କଥାରେ କାନ ଦିଅନ୍ତି ନାହିଁ ।

କବିସୂର୍ଯ୍ୟ ଚୁଗୁଲିଆଙ୍କୁ କିଛି କହୁ ନ ଥିଲେ । କିନ୍ତୁ ସେ ଠିକ୍

ସମୟରେ ତାଙ୍କ କବିତା ଢରିଆରେ ସେମାନଙ୍କୁ ଚେଁଖେ ଲେଖାଏଁ ଦେଉଥିଲେ । ଚେଁଖା କଥା ବୁଝି ରାଜା ମନେ ମନେ ଖୁସି ହେଉଥିଲେ । ଚୁଗୁଲିଆମାନେ ଚେଁଖା ପାଇ ଚୁପ୍ ହୋଇଯାଉଥିଲେ । କବିସୂର୍ଯ୍ୟ ବି ସେମାନଙ୍କୁ ପାନେ ପାନେ ଚଖାଇ ନିଜେ ଖୁସି ହେଉଥିଲେ । ତାଙ୍କ କବିତା ଚେଁଖାରୁ ପଦେ ଏଠାରେ ଦିଆଗଲା :

କୁଆ ପଞ୍ଜରୀରେ ପଡ଼ିଲେ କି ଧରେ
ଶୁଆ ପରି ହରି ନାମ,
ଭୁଆଟା ଗୁହାରେ ପଶିଲେ କି କରେ
ଛୁଆ ସିଂହ ପରାକ୍ରମ ?
ସରସେ କୁହାଯାଉଥାଏ ସିନା,
ତୁହାଇ ତୁହାଇ ପୁଟ ଦେଲେ ହେଲେ
ଲୁହା କି ହୋଇବ ସୁନା ?

ତାଙ୍କ କବିତା ଚେଁଖାରୁ ଆଉ ଗୋଟିଏ :
ବରଜୀବ ରସେ ଦେଇ ମାନସ,
ବରଜି ବରକ୍ଷେ ଅମେଧ ଗ୍ରାସ,
ଦେହେ ମନ୍ଦାକିନୀ ରଜ ଲଗାଇ,
ଗ୍ରାମ ଶୂକର କି ହୋଇବ ଗାଈ ?
ଜଗତେ କେବଳ
ଜନେ ହସିବେ ଏହି ତହୁଁ ଫଳ ।

କବିସୂର୍ଯ୍ୟ ଆଠଗଡ଼ରେ ଥିବା ସମୟର କଥା । ସେତେବେଳେ ଆଠଗଡ଼ ରାଜାଙ୍କ ମନ୍ତ୍ରୀ ଥିଲେ ରାମଚନ୍ଦ୍ର ବ୍ରହ୍ମା । ତାଙ୍କ ପୁଅ ଜଣେ କବି ଥିଲେ । କବିସୂର୍ଯ୍ୟଙ୍କ ପରି ନାଁ କରିବାକୁ ସେ ଆଶା ବାନ୍ଧିଥିଲେ । ଭଲ ଭଲ କବିତା ଲେଖି ରାଜାଙ୍କ ନିକଟକୁ

ପଠାଉଥିଲେ । କବିସୂର୍ଯ୍ୟଙ୍କ କବିତା ପରି ସେତେ ଉତ୍କୃଷ୍ଟ ନଥିଲେ ବି ତାଙ୍କ ଲେଖା ନିକୃଷ୍ଟ ନ ଥିଲା । ମନ୍ତ୍ରୀଙ୍କ ପୁଅ ହୋଇଥିବାରୁ ରାଜା ତାଙ୍କୁ 'କବିଚନ୍ଦ୍ର' ଉପାଧି ଦେଲେ । ଏଥିରେ କବିସୂର୍ଯ୍ୟ ଅଭିମାନ କରି ଗାଇଥିଲେ :

କବି ହୋଇଗଲେ ସମସ୍ତ ଲୋକେ,
ରବି ହେଲେ ଜ୍ୟୋତିରିଙ୍ଗଣ ପୋକେ,
ହବି ହୋଇଗଲେ ପୁଳିନ୍ଦ ପେଜ,
ପବି ହୋଇଲାଣି ମୃଣାଳ ବ୍ରଜ,
ଅବିବେକ ଦେବେ
ନବୀନ ସୃଷ୍ଟିକି କଲେ କି ଏବେ ?

ରାଜା କବିସୂର୍ଯ୍ୟଙ୍କ ମନ କଥା ବୁଝିଗଲେ । ସେ କବିସୂର୍ଯ୍ୟଙ୍କୁ ବୁଝାଇଲେ - ଚନ୍ଦ୍ରଙ୍କର ନିଜ କିରଣ ନାହିଁ । ସେ ସୂର୍ଯ୍ୟଙ୍କ କିରଣରେ ଆଲୋକିତ । ତେଣୁ କବିଚନ୍ଦ୍ର କେବେ କବିସୂର୍ଯ୍ୟଙ୍କ ସହ ସମାନ ହୋଇପାରିବେ ନାହିଁ ।

ରାଜାଙ୍କ କଥାରେ କବିସୂର୍ଯ୍ୟଙ୍କ ମନ ମାନିଗଲା । ତାଙ୍କ ଅଭିମାନ ଭାଙ୍ଗିଗଲା ।



# ଫୁଲର ମହକ ଚହଟିଲା

ଓଡ଼ିଶାର ପ୍ରାଚୀନ ସାହିତ୍ୟପୀଠମାନଙ୍କ ମଧ୍ୟରେ ଗଞ୍ଜାମ ଜିଲାର ଆଠଗଡ଼ର ସ୍ଥାନ ବହୁତ ଉଚ୍ଚରେ । ଆଖି ବୁଜି ଦୁଇ ଶହ ବର୍ଷ ପୂର୍ବର ଆଠଗଡ଼ କଥା ମନକୁ ନେଲେ ଆମ ହୃଦୟ ଆନନ୍ଦରେ ପୂରି ଉଠିବ । ଚାରି ପଟେ ବୃତ୍ତାକାରରେ ପର୍ବତମାନ ଘେରି ରହିଛି ଆଠଗଡ଼କୁ । ଏ ପର୍ବତମାନ ଘଞ୍ଚ ଗଛଲତାରେ ପରିପୂର୍ଣ୍ଣ । ପର୍ବତମାନଙ୍କ ଦେହରୁ ଝରି ଆସୁଥାଏ ଅନେକ ଛୋଟ ଛୋଟ ଝରଣା । ଜଳସେଚନ ପାଇଁ ପ୍ରକୃତି ଦେବୀ ଯେମିତି ଯୋଗାଇ ଦେଇଥିଲେ ସେମାନଙ୍କୁ ।

ଏହାଛଡ଼ା ଆଠଗଡ଼ ରାଜାମାନଙ୍କ ଯତ୍ନରେ ଶୋଭା ପାଉଥିଲା ଭିତର ସାଗର, ବାହାର ସାଗର, ନାଗେଶ୍ୱର ବନ, କେତକୀ ବନ । ଫୁଲର ହାଟ ବସିଥିଲା ଯେମିତି ସେଠି । ଦେଖିଲେ ଆଖି ପୂରି ଉଠିବ । ଫୁଲର ସୁବାସରେ ଚାରିଦିଗ ମହକି ଉଠୁଥିଲା । ପକ୍ଷୀମାନଙ୍କ ରାବ, ଭ୍ରମରର ଗୁଞ୍ଜନ ଏବଂ ପଶୁମାନଙ୍କ ସ୍ୱଚ୍ଛନ୍ଦ ବିରଚଣ ଆଠଗଡ଼କୁ ଅପୂର୍ବ ଶ୍ରୀମଣ୍ଡିତ କରିଥିଲା ।

ଆଗରୁ ଓଡ଼ିଶାରେ ଆଠଗଡ଼ର ନାଁ ଥିଲା । ମୁସଲମାନ-ମାନଙ୍କର ଆକ୍ରମଣ ସମୟରେ ତିନି ଠାକୁରଙ୍କ ସହ ପୁରୀ ରାଜା ଏଇ ଆଠଗଡ଼ ରାଜ୍ୟରେ ଆଶ୍ରୟ ନେଇଥିଲେ । ସେଥିପାଇଁ ଗଞ୍ଜାମର ଆଠଗଡ଼ 'ଶରଣ ରାଜ୍ୟ' ରୂପେ ବିଖ୍ୟାତ । ଏବେ ବି ଏକାଦଶୀ

ତିଥିରେ ପୁରୀ ବଡ଼ ଦେଉଳ ଉପରେ ମହାଦୀପ ଉଠିବା ବେଳେ ଆଠଗଡ଼ ରାଜାଙ୍କୁ ସ୍ମରଣ କରାଯାଉଛି ।

ଏଇ ଆଠଗଡ଼ କବିସୂର୍ଯ୍ୟଙ୍କ ସାହିତ୍ୟ ସାଧନାର ମୁଖ୍ୟ ପୀଠ ଥିଲା । ଏଠି ଅଜା ଘରେ ତାଙ୍କର ବାଲ୍ୟ ଜୀବନ ବିତିଥିଲା । ଆଠଗଡ଼ର ଧୂଳିମାଟି, ପାଣିପବନ, ରାସ୍ତାଘାଟ, ବଣବୁଦା ସହ ସେ ପିଲାବେଳୁ ପରିଚିତ ଥିଲେ । ମନୋହର ପ୍ରାକୃତିକ ପରିବେଶ ସହିତ ଗୁଣଗ୍ରାହୀ ରାଜା ବାଲୁକେଶ୍ୱରଙ୍କ ପୃଷ୍ଠପୋଷକତା ସେ ଏଠାରେ ପାଇଲେ । ଫଳରେ ତାଙ୍କର କବିପ୍ରାଣ ଆନନ୍ଦରେ ଉଛୁଳି ଉଠିଲା । ଏଠି ସେ ରଚନା କଲେ ତାଙ୍କର ଅମର ପଦ୍ୟ ସାହିତ୍ୟ : ଚମତ୍କାର ଚମ୍ପୂ, ଚୌପଦୀ, ଚଉତିଶା ଓ ପ୍ରାଣବନ୍ତ ଗୀତି କବିତା । ଓଡ଼ିଶା ସାହିତ୍ୟକୁ ଏସବୁ ହେଲା କବିସୂର୍ଯ୍ୟଙ୍କ ଅମଳିନ ଅବଦାନ । କବିସୂର୍ଯ୍ୟ ଉପାଧି ସାର୍ଥକ ହୋଇଥିଲା ଏଇ ଅବଦାନରେ ।

କବିସୂର୍ଯ୍ୟ ହଜାର ହଜାର ଗୀତି କବିତା ରଚନା କରିଥିଲେ ଆଠଗଡ଼ରେ । ସେସବୁ ଫୁଲ ପରି କୋମଳ, ମନୋହର ଓ ସୁବାସିତ ଥିଲା । ତାର ମହକ ଚହଟୁଥାଏ ଚତୁର୍ଦ୍ଦିଗରେ । ଏହିପରି ବାଣୀବୀଣା ଝଙ୍କାରରେ ଶରଣ ରାଜ୍ୟ ଆଠଗଡ଼ ପୂରି ଉଠିଥିଲା ।

ଆଠଗଡ଼ରେ ଥିବାବେଳେ କବିସୂର୍ଯ୍ୟ ରଚନା କରିଥିଲେ ତାଙ୍କର କାଳଜୟୀ ଗୀତିକବିତା 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' । ଭାଷା, ଭାବ, ରାଗ, ବୃତ୍ତ ଆଦି ଦିଗରେ ଅନୁପମ ଏଇ ଚମ୍ପୂ । ଆଠଗଡ଼ ରାଜା ରାଧାକୃଷ୍ଣଙ୍କ ଭକ୍ତ ଥିବା ଯୋଗୁଁ କବିସୂର୍ଯ୍ୟ ରାଧାକୃଷ୍ଣ ଚରିତକୁ ନେଇ ଏହି ଚମ୍ପୂ ରଚନା କରିଥିଲେ । ଏହା ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ମୁଖ୍ୟତଃ ରାଧା, ତାଙ୍କ ପ୍ରିୟ ସଖୀ ଲଳିତା ଏବଂ କୃଷ୍ଣଙ୍କ କଥାଭାଷା ଏଥିରେ ଅଛି । ଏକ ପୂର୍ଣ୍ଣାଙ୍ଗ

ନାଟକର ବିଭିନ୍ନ ଅଙ୍କ ଓ ଦୃଶ୍ୟ ପରି ପାଠକ ଆଖି ଆଗରେ ନାଚିଯାଏ ଏଥିରେ ବର୍ଣ୍ଣିତ ଦୃଶ୍ୟ । 'କ' ଠାରୁ 'କ୍ଷ' ଯାଏଁ ଚଉତିରିଶଟି ଅକ୍ଷରକୁ ନେଇ ଚଉତିରିଶ ଗୋଟି ଚମ୍ପୂ ଗୀତ ରଚିତ ହୋଇଛି । ତାର ପ୍ରଥମ ଗୀତଟି ଏହିପରି :

କି ହେଲା ରେ, କହି ତ ନୁହଇ ଭାରତୀରେ,
କାଲି ଯା' ଦୂରରୁ ଦେଖି
କଳନା କଲା ମୋ ଆଖି,
କଳା ଇନ୍ଦୀବର ଆରତୀ ରେ । । ପଦ ।

କବିସୂର୍ଯ୍ୟ ରଚନା କରିଥିବା ଅନ୍ୟ ଏକ ଚମ୍ପୂର ନାମ 'ରତ୍ନାକର ଚମ୍ପୂ' । ସେଇ ଚମ୍ପୂରୁ ପଦେ :

କ୍ଷୀଣମଧ୍ୟମା ରେ, କ୍ଷଣେ ନୋହିବାଟି ଭିନ୍ନ,
କ୍ଷେମତରୁ ପରି ହରିବା ଏ ଯଉବନ ।

କବିସୂର୍ଯ୍ୟ ଅସଂଖ୍ୟ ସଙ୍ଗୀତ ରଚନା କରିଥିଲେ । ସେଗୁଡ଼ିକର ଭାଷା ଯେମିତି ମନୋହର, ଭାବ ମଧ୍ୟ ସେମିତି ମନଛୁଆଁ । ବିଭିନ୍ନ ଗୀତର ରାଗ ଭିନ୍ନ ଭିନ୍ନ । ଯମକ, ଅନୁପ୍ରାସ ଆଦି ଠିକ୍ ସ୍ଥାନାରେ ଦେଇଛନ୍ତି କବିସୂର୍ଯ୍ୟ ।
ସେଥିରୁ ପଦେ :

ମାନ ସୁମନା, କରି ଦେ ମାନସୁ ମନା ରେ ।। ୦ ।।
ଗିରି ସମ ଛାଇ ରେ ରାମା, ଗିରି ସମ ଛାଇ
ଦେଇ ମୁଁ ପାଇଛି ତୋତେ ଗିରୀଶ ମନ୍ଥାଇ ।। ୧ ।।

କବିସୂର୍ଯ୍ୟ ଲେଖିଥିବା ଗାଆଁଗହଳି ଲୋକଙ୍କ ମନଛୁଆଁ ଢୁମ୍ପା ସଙ୍ଗୀତରୁ ପଦେ :

ତୋ ଚାରୁ ଚାହାଣି ଚାହିଁ,
ମରି ତୁ ଆବୁର ସାରି ପକା ପଛେ,
ମୋ ନିଆଳି,
ମୋ ଦେହ ତ ସହୁନାହିଁ ।

କବିସୂର୍ଯ୍ୟଙ୍କ ଅଭିମାନଭରା ଜଗନ୍ନାଥ ଜଣାଣକୁ ପଦେ :
କ୍ଷୀରମୟ ସିନ୍ଧୁ- ଜେମା ଜୀବବନ୍ଧୁ,
ତୁମ୍ଭେ ତ ଜଗତ ପତି
ଟେକି ସମ-ଦୃଷ୍ଟି- ପତାକାକୁ ପୁଣି
ଏ କି ପକ୍ଷପାତ ରୀତି, ହେ ମହାପ୍ରଭୁ ।
କେ କି କଲା, ମୁଁ ନ କଲି,
କେ କି ଦେଲା ଅବା ମୁଁ ଅବା ନ ଦେବା
ଘେନି ଏତେ ସରି ହେଲି, ହେ ମହାପ୍ରଭୁ ।୧।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ 'ଲାବଣ୍ୟବତୀ' କାବ୍ୟ ରଚନା କରିଥିଲେ । କବିସୂର୍ଯ୍ୟ ଏ ପ୍ରକାର ଏକ ଚମତ୍କାର କାବ୍ୟ ରଚନା କରିଥିଲେ ଜଳନ୍ତରରେ ଥିବାବେଳେ । ସେଠିକା ରାଜାଙ୍କ ପାଳିତା କନ୍ୟା ଚନ୍ଦ୍ରକଳାର ନାମ ଅନୁସାରେ କବି ଏହାର ନାମ ରଖିଥିଲେ 'ଚନ୍ଦ୍ରକଳା' । ସେଇ ଅପୂର୍ଣ୍ଣ ଅମର କାବ୍ୟରୁ ପଦେ :

ନୃପତନୟ ନୟ ନୟନା ସବିନୟ
ପ୍ରିୟ ବୟସ୍ୟ ସଙ୍ଗେ ରସି
ଏକାନ୍ତେ ବସି ବଶି ମନୋରଞ୍ଜନା ବଶୀ-
କରଣ ଗୁଣ କହେ ହସି, ହେ ପ୍ରାଣପ୍ରିୟ,
ବାରିଦ ସମ୍ଭବ ସେ ଭଲା
ନାରୀ ଜଗତେ ସେ ରଚିଲା
ତରୁଣେ କ୍ଷଣେ କ୍ଷଣ ଦେବାରେ ବିଚକ୍ଷଣ
ଶୁଭ ଲକ୍ଷଣ ପୂର୍ଣ୍ଣ କଳା ସେ ।୧।

ସଂସ୍କୃତ ସାହିତ୍ୟରେ କବିସୂର୍ଯ୍ୟଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । କିଶୋରଚନ୍ଦ୍ରାନନ୍ଦ ଚମ୍ପୂର ମଙ୍ଗଳାଚରଣରେ ସେ ଲେଖିଛନ୍ତି :

ତେନେ ଯେନେହ କୃଷ୍ଣାବସନବିତରଣୋଦ୍‌ବେଗ ନୈପୁଣ୍ୟପୁଣ୍ୟଂ
ପାର୍ଥାନର୍ଥାନ୍ କୁରୁଣାମଧିପତି ବିହିତାନ୍ ଯୋ ଜୁହାବାହବାଗ୍ନୌ ।
ସତ୍ୟାମତ୍ୟାନୟଦ୍ ଯୋ ଭୁବମମରତରୁଂ ସ୍ୱର୍ଗତୋଽନର୍ଗଳୌଜାଃ
ହନ୍ତା ଦନ୍ତାବଳାର୍ତ୍ତେଃ ସଃ ପରମପୁରୁଷଃ ସନ୍ତତଂ ତଂ ତନୋତୁ ।

ଏହାର ଓଡ଼ିଆ ଗୀତାନୁବାଦ :

ବିତରି ବସନ କୃଷ୍ଣାରେ କୀର୍ତ୍ତି କଲ ଭୂତଳେ,
ପାଣ୍ଡବ - ଅହିତ - ଆହୂତି ଦେଲ ଆହବାନଳେ,
ସତ୍ୟଭାମା ଲାଗି ମରତେ ସୁରତରୁ ଆଣିଲ,
ହସ୍ତୀ ଆର୍ତ୍ତିହର, କୃଷ୍ଣ ହେ, ସଦା କର ମଙ୍ଗଳ ।

ଯଦୁମଣି ମହାପାତ୍ର ଥିଲେ ଓଡ଼ିଶାର ଜଣେ ବିଖ୍ୟାତ ହାସ୍ୟରସର କବି । ସେ କବିସୂର୍ଯ୍ୟଙ୍କ ସମୟର ଲୋକ । ଗଞ୍ଜାମର ଆଠଗଡ଼ରେ ଜନ୍ମଗ୍ରହଣ କରିଥିଲେ । ପିଲାବେଳେ ବାପାମା'ଙ୍କ ସହ ଆଠଗଡ଼ରୁ ଚାଲିଯାଇ ନୟାଗଡ଼ର ଇଟାମାଟି ଗାଁରେ ରହିଲେ । ଯୋଗକୁ ନୟାଗଡ଼ ରାଜସଭାରେ କବିସୂର୍ଯ୍ୟ ଓ ଯଦୁମଣି ପରସ୍ପରର ପରିଚୟ ପାଇଲେ । ଥରେ କବିସୂର୍ଯ୍ୟ ଏକ ମଜା ଢଗ ଲେଖି ଯଦୁମଣିଙ୍କ ପାଖକୁ ପଠାଇଲେ । ତାହା ଏପରି :

ନାହିଁ ବାରୁଦ ଆଉ ବେଲା ସଜ,
ବଡ଼ ଉକ୍‌ଟ ସେ ତୋପ ଆବାଜ,
ଯାମୁଜି ଅନଳ ଦେଖିଲା ନାହିଁ,
ଚମକି ପଡ଼ଇ ଘୁମୁକି ମୁହିଁ,

ସହି ପାତିଳକୁ
ଆଗ କରି ଦହି ଦେଲା ସ୍ୱର୍ଗକୁ ।

ଯଦୁମଣି କି ଛାଡ଼ିବା ଲୋକ ? ସେ ଏହାର ଉତ୍ତରରେ ଆଉ ଏକ ଢଗ ଲେଖି କବିସୂର୍ଯ୍ୟଙ୍କ ନିକଟକୁ ପଠାଇଦେଲେ । ତାହା ଏ ପ୍ରକାର :

ପାର୍ଥ ଧନୁ ନାମ ରାଇଲା ବେଳେ,
ଭୀମ ତାତ ଜାତ ହେଲେ ସେ କାଳେ
ବଡ଼ ବିଜ୍ଞପଣ
ଆମ୍ଭ ପାଖକୁ ଲେଖିଛ ଆପଣ ।

ପ୍ରଶ୍ନକୁ ଚାହିଁ ଉତ୍ତର ବି ଚମତ୍କାର ହୋଇଗଲା । କବିସୂର୍ଯ୍ୟଙ୍କ ଢଗର ବିଷୟ ଥିଲା 'ପାଡ଼' । ଯଦୁମଣି ବି ତା' ବିଷୟରେ ଠିକ୍ ଉତ୍ତର ଦେଇଥିଲେ । ଢଗ ଦୁଇଟି ବୁଝିଲେ ନ ହସି ରହିପାରିବ ନାହିଁ ।

କବିସୂର୍ଯ୍ୟ ତେଲୁଗୁ ଭାଷା ଭଲ ଜାଣିଥିଲେ । ଏପରି କି, ଛତ୍ରରେ ଥିବା ବେଳେ ସେ ତେଲୁଗୁ ଭାଷାରେ କେତୋଟି କବିତା ରଚନା କରିଥିଲେ । ସେଥିରୁ ପଦେ :

ପାଲିଞ୍ଚୁନନ୍ତୁ ଭୂମିନ୍ଦ୍ର ଶୀରାମଚନ୍ଦ୍ର
ଦେବାଭୂରି ସଦ୍‌ଗୁଣସାନ୍ଦ୍ର
ବୈରିବିର୍ଦନୁ ତଉ, ବାମାକ୍ଷୀ ମଦନ ତଉ
ଶ୍ରୀବାସ ବଦନୁ ତଉ, ଗୀର୍ଦେବୀ ସଦନ ତଉ ।

କବିସୂର୍ଯ୍ୟ ଗଦ୍ୟ ସାହିତ୍ୟରେ ଚମତ୍କାର ହାସ୍ୟରସ ପରିବେଷଣ କରୁଥିଲେ । ଏହାଦ୍ୱାରା ସେ ଆଠଗଡ଼ ରାଜାଙ୍କୁ

ହସାଇ ହସାଇ ତାଙ୍କ ପିଠିରେ ଉଠିଥିବା ମାରାତ୍ମକ ବ୍ରଣକୁ ଫଟାଇ ଦେଇଥିଲେ । ବଡ଼ ବଡ଼ ଚିକିତ୍ସକମାନେ ତାହା କରି ପାରି ନ ଥିଲେ ।

କବିସୂର୍ଯ୍ୟ ଥିଲେ ଜଣେ ଆଶୁ କବି । ସେ ମୁହେଁ ମୁହେଁ ରଚନା କରୁଥିଲେ ସୁନ୍ଦର ସଂସ୍କୃତ ଶ୍ଳୋକ ଓ ମନୋହର ଓଡ଼ିଆ ଗୀତି କବିତା । ତାଙ୍କ ସାହିତ୍ୟ ଫୁଲର ମହକ ଚାରିଆଡ଼େ ଚହଟୁଥିଲା । ତାଙ୍କର ଅସଂଖ୍ୟ ସଂସ୍କୃତ ରଚନା କାଳ ଗର୍ଭରେ ଲୀନ ହୋଇଯାଇଛି । ତାଙ୍କର ଶହ ଶହ ଓଡ଼ିଆ ଗୀତି କବିତା ଥିଲେ ବି ଲୋକ ଲୋଚନକୁ ଏ ଯାଏଁ ଆସିନାହିଁ । ଏତେ ବଡ଼ ପ୍ରତିଭାଧର କବିଙ୍କୁ ଯଥୋଚିତ ସମ୍ମାନ ଦେଇ ପାରିନାହିଁ ଆମ ଓଡ଼ିଆ ଜାତି । ଜଗନ୍ନାଥ କରନ୍ତୁ, ଓଡ଼ିଶାବାସୀ ଏ ଦିଗରେ ଜାଗ୍ରତ ହୁଅନ୍ତୁ । କବିସୂର୍ଯ୍ୟଙ୍କ ସାରସ୍ୱତ ଅଂଶୁ ଓଡ଼ିଶାକୁ ଦୀପ୍ତିମନ୍ତ କରୁ ।



# ବଣ ହରିଣୀର ଲେଉଟାଣି

ଆଠଗଡ଼ ରାଜସଭାରେ ଅନେକ ପଣ୍ଡିତ ଓ କବି ଥିଲେ । ତାରାମାନଙ୍କ ମଧ୍ୟରେ ଚନ୍ଦ୍ର ପରି କବିସୂର୍ଯ୍ୟ ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ । ରାଜସଭାରେ ନାନା ଶାସ୍ତ୍ର ଚର୍ଚ୍ଚା ହୁଏ । ରାଜ ଉଦ୍ୟାନରେ ସଙ୍ଗୀତର ଆସର ଜମେ । କବିସୂର୍ଯ୍ୟ ନିତି ନୂଆ ନୂଆ ସଙ୍ଗୀତ ରଚନା କରି ଶୁଣାନ୍ତି । କବିସୂର୍ଯ୍ୟ ନିଜେ ଜଣେ ସୁଗାୟକ ଥିଲେ । ତାଙ୍କର କଣ୍ଠ ଅତି ମଧୁର ଥିଲା । କିନ୍ତୁ ଅଧିକାଂଶ ସମୟରେ ରାଜସଭାର ମୁଖ୍ୟ ଗାୟକମାନଙ୍କଦ୍ୱାରା ତାଙ୍କ ଗୀତ ଶୁଣାଉଥିଲେ ।

ରାଗରାଗିଣୀ ପାଇଁ ଦକ୍ଷିଣୀ ତେଲୁଗୁ ସଙ୍ଗୀତର ଭାରି ନାଁ ଅଛି । କବିସୂର୍ଯ୍ୟ ଆଠଗଡ଼ରେ ଥିବାବେଳେ ଦିନେ ଜଣେ ତେଲୁଗୁ ସଙ୍ଗୀତ ଆଚାର୍ଯ୍ୟ ଆଠଗଡ଼ ରାଜସଭାରେ ପହଞ୍ଚିଲେ । ଭାରି ନାଁ ଥିବା ଆଚାର୍ଯ୍ୟ ଥିଲେ ସେ । ସେ ଦମ୍ଭର ସହ କହିଲେ ଯେ, ତାଙ୍କ ସଂଗୀତରେ ଆକୃଷ୍ଟ ହୋଇ ବଣର ହରିଣ ମଧ୍ୟ ତାଙ୍କ ପାଖକୁ ଚାଲି ଆସିବ ।

ମନୁଷ୍ୟ, ପଶୁପକ୍ଷୀ, ସମସ୍ତଙ୍କର ଅତି ପ୍ରିୟ ସଙ୍ଗୀତ । କିନ୍ତୁ ବଣର ପଶୁଟାଏ ଯେ ସେଥିରେ ଆକୃଷ୍ଟ ହୋଇ ମଣିଷ ପାଖକୁ ଚାଲିଆସିବ, ଏହା କେହି ବିଶ୍ୱାସ କରିପାରିଲେ ନାହିଁ । ତଥାପି ଦକ୍ଷିଣୀ ଆଚାର୍ଯ୍ୟ ନିଜ କଥାର ପ୍ରମାଣ ଦେବାକୁ ଅଣ୍ଟା ଭିଡ଼ିଲେ ।

ନାଗେଶର ବନରେ ସଙ୍ଗୀତ ଆସର ବସିଲା । ଦକ୍ଷିଣୀ

ଆଚାର୍ଯ୍ୟଙ୍କ ସୁମଧୁର ରାଗ ଓ ସ୍ୱରରେ ଜଳ, ସ୍ଥଳ ଓ ଆକାଶ ଏକାକାର ହୋଇଗଲା । ଏତିକିବେଳେ ହଠାତ୍ ପତ୍ର ଗହଳରୁ ଦେଖାଗଲା ଗୋଟିଏ ବଣ ହରିଣୀର ମୁହଁ । ଧୀରେ ଧୀରେ ହରିଣୀ ପହଞ୍ଚିଗଲା ଆଚାର୍ଯ୍ୟଙ୍କ ପାଖରେ । ଆଚାର୍ଯ୍ୟ ତାଙ୍କ ଗଳାରୁ ଫୁଲ ମାଳଟି ଉଠାଇ ଗଳାଇ ଦେଲେ ହରିଣୀର ବେକରେ । ମଣିଷ ହାତ ଲାଗିବାରୁ ହରିଣୀଟି ଭୟ ପାଇ ବଣ ଭିତରକୁ ଚାଲିଗଲା ।

ଏ ଦୃଶ୍ୟ ଦେଖି ସଙ୍ଗୀତ ଆସରରେ ବସିଥିବା ରାଜା ଓ ସଭାସଦମାନେ ଚମକି ଉଠିଲେ । ସମସ୍ତେ ଆଚାର୍ଯ୍ୟଙ୍କର ଭୁରି ଭୁରି ପ୍ରଶଂସା କଲେ । କବିସୂର୍ଯ୍ୟ ବି ଆଚାର୍ଯ୍ୟଙ୍କର ପ୍ରଶଂସା କଲେ । କିନ୍ତୁ ସେ ଭାବିଲେ, ତାଙ୍କ ରଚିତ ଓଡ଼ିଶୀ ସଙ୍ଗୀତ ଠିକ୍ ଗାଇଲେ ହରିଣୀ ଆକୃଷ୍ଟ ହେବ ନାହିଁ କାହିଁକି ?

କବିସୂର୍ଯ୍ୟ ରାଜଗାୟକ ମଦନମଣିଙ୍କୁ ତାଙ୍କ ରଚିତ ଏହି ଓଡ଼ିଶୀ ଗୀତଟି ଗାଇବାକୁ ନିର୍ଦ୍ଦେଶ ଦେଲେ :

ଯେବେ ନବଘନ ଶ୍ୟାମ ବଂଶୀସ୍ୱନ
ନିଶାଥରେ ଥରେ ଶୁଣାଯିବ,
ସଖି, ସୁଖେ ବନେ ମୋଦମୟ ମନେ
ବିହରିବୁ ତୋର ଊଣାଯିବ । ଘୋଷା ।

ଗୀତର ମଧୁର ରାଗ ଓ ତାଳ ସହ ମଦନମଣିଙ୍କ କଣ୍ଠସ୍ୱର ଅପୂର୍ବ ସ୍ୱର ଝଙ୍କାର ସୃଷ୍ଟି କଲା । ଜଳ, ସ୍ଥଳ, ଆକାଶ ସତେ ଯେମିତି ସେହି ସଙ୍ଗୀତ ମନ୍ତ୍ରରେ ସ୍ତବ୍ଧ ହୋଇଗଲା । ହରିଣୀ ପାଖରେ ଦେଖା ଦେଲା, କିନ୍ତୁ ଭୟ ପାଇ ଚାଲିଗଲା । ଦକ୍ଷିଣୀ ଆଚାର୍ଯ୍ୟ ସମେତ ରାଜା, ଓ ସଭାସଦମାନେ ମଦନମଣି ଓ କବିସୂର୍ଯ୍ୟଙ୍କର ଜୟ ଜୟକାର କଲେ ।

ଧନ୍ୟ କବିସୂର୍ଯ୍ୟ ! ଧନ୍ୟ ତୁମ ଅମୃତ ଗୀତି କବିତା !!

***

# ନରନାରାୟଣ ସେବା

କବିସୂର୍ଯ୍ୟ କେବଳ ଜଣେ ବିଖ୍ୟାତ କବି ନ ଥିଲେ, ସେ ଜଣେ ନୈଷ୍ଠିକ ଓ ତେଜସ୍ୱୀ ବ୍ରାହ୍ମଣ ଥିଲେ । ପୂଜାପାଠ, ଧ୍ୟାନ ଚିନ୍ତନ ଆଦି ତାଙ୍କର ଦୈନିକ କାର୍ଯ୍ୟ ଥିଲା । ସେଥିପାଇଁ ତାଙ୍କ ମୁହଁରେ ବ୍ରାହ୍ମଣ ଜ୍ୟୋତି ଫୁଟି ଉଠୁଥାଏ । ତାଙ୍କଠାରେ ଥିବା ଦିବ୍ୟ ଶକ୍ତି ଯୋଗୁଁ ତାଙ୍କ କଥାକୁ ସମସ୍ତେ ମାନି ନେଉଥିଲେ ।

କବିସୂର୍ଯ୍ୟ ବି ଜଣେ ଉତ୍ତମ ଶାସକ ଥିଲେ । କବିମାନେ ସାଧାରଣତଃ କଳ୍ପନା ରାଜ୍ୟରେ ଘୂରି ବୁଲନ୍ତି । ତେଣୁ ସଂସାରିକ ବୁଦ୍ଧିରେ ସେମାନେ ବିଚକ୍ଷଣ ହୋଇ ନ ଥାନ୍ତି । କିନ୍ତୁ କବିସୂର୍ଯ୍ୟଙ୍କଠାରେ କବିତ୍ୱ ଓ ଶାସନ ପରିଚାଳନାର ଦକ୍ଷତା ଥିଲା । ସେ ବିଭିନ୍ନ ସମୟରେ ଜଳନ୍ତର, ଆଠଗଡ଼, ମହୁରୀ ଆଦି ରାଜ୍ୟର ଶାସନ ଚଳାଇ ନିଜର ବିଚକ୍ଷଣ ବୁଦ୍ଧିର ପରିଚୟ ଦେଇଥିଲେ ।

କବିସୂର୍ଯ୍ୟ ଦୀର୍ଘ ଦିନ ଧରି ଜଳନ୍ତର ରାଜ୍ୟର ମନ୍ତ୍ରୀ ଥିଲେ । ଏତେ ବଡ଼ କ୍ଷମତାରେ ଥାଇ ବି ସେ କେବେ ଗର୍ବ କରୁ ନ ଥିଲେ । କ୍ଷମତା ବଳରେ ସେ ଅନ୍ୟର ଉପକାର କରୁଥିଲେ, କେବେ କାହାର ଅନିଷ୍ଟ କରୁ ନ ଥିଲେ । ସେ ସରଳ, ସାଧୁ ଓ ନିର୍ଲୋଭ ଥିଲେ । ନିଜ ସୁଖ ପାଇଁ ସେ ରାଜକୋଷରୁ କେବେ ପଇସା ଖର୍ଚ୍ଚ କରୁ ନ ଥିଲେ । ସେଥିପାଇଁ ସେ ରାଜାଙ୍କର ଅତି ବିଶ୍ୱସ୍ତ ଓ ପ୍ରିୟ ଥିଲେ ।

କୃଷିର ଉନ୍ନତି ଲାଗି କବିସୂର୍ଯ୍ୟ ଜଳନ୍ତର ରାଜ୍ୟରେ ଅନେକ ବଡ଼ ବଡ଼ ପୋଖରୀ ଖୋଳାଇଥିଲେ । ଜଳସେଚନର ସୁବିଧା ହେବାରୁ ଚାଷୀମାନେ ପ୍ରଚୁର ଶସ୍ୟ ଉତ୍ପାଦନ କଲେ । ଏହା ଛଡ଼ା ବିଭିନ୍ନ ଶସ୍ୟ ଉତ୍ପାଦନ ପାଇଁ ସେ ଗରିବ ଚାଷୀମାନଙ୍କୁ ରାଜକୋଷରୁ ଅର୍ଥ ସାହାଯ୍ୟ କରିଥିଲେ । ଏହା ଫଳରେ ରାଜ୍ୟର ଲୋକମାନେ ରାମରାଜ୍ୟର ସୁଖ ଭୋଗ କଲେ । ପ୍ରଜାମାନଙ୍କ ସୁବିଧା ପାଇଁ କବିସୂର୍ଯ୍ୟ ରାଜ୍ୟର ରାଜଧାନୀକୁ ଦୁର୍ଗାପ୍ରସାଦକୁ ଉଠାଇ ଆଣିଥିଲେ ।

ଜଳନ୍ତରରେ ଅନେକ ଦେବାଳୟ ଥିଲା । ପୂର୍ବେ ରାଜାମାନେ ଠାକୁରଙ୍କ ପାଇଁ ପ୍ରଚୁର ଭୂସମ୍ପତ୍ତି ଖଞ୍ଜିଥିଲେ । କିନ୍ତୁ ମନ୍ଦିରର ସେବକ ଓ ପରିଚାଳକମାନେ ଠାକୁର ସମ୍ପତ୍ତି ଆତ୍ମସାତ୍ କରିବାରୁ ସେବାପୂଜା, ନୀତିକାନ୍ତି ଠିକ୍‌ଭାବେ ଚାଲୁ ନ ଥିଲା । କବିସୂର୍ଯ୍ୟ ସେମାନଙ୍କୁ ସଭାକୁ ଡକାଇଲେ । ସେମାନଙ୍କୁ ଦଣ୍ଡର ଭୟ ଦେଖାଇଲେ । ଠାକୁରଙ୍କ ସମ୍ପତ୍ତି ଠାକୁରଙ୍କ କାମରେ ଲାଗିବାର ବ୍ୟବସ୍ଥା କରିଦେଲେ । ମନ୍ଦିରମାନଙ୍କରେ ଦରିଦ୍ର, ଭୋକିଲା ଲୋକମାନଙ୍କୁ ମାଗଣା ଅଭ୍ୟାଗତ ଭୋଜନ ମିଳିବାର ବ୍ୟବସ୍ଥା କରିଦେଲେ । ରାଜାଙ୍କ ଶାସନକାଳରେ କବିସୂର୍ଯ୍ୟ ଯାହା କରି ପାରିଥିଲେ, ତାହା ବର୍ତ୍ତମାନର ଲୋକ ଶାସନରେ ବି ହୋଇ ପାରୁନାହିଁ । ଧନ୍ୟ ଲୋକସେବକ କବିସୂର୍ଯ୍ୟ ।

ଆନ୍ଧ୍ର ଲୋକଙ୍କ ସଂସ୍ପର୍ଶରେ ଆସି ଓଡ଼ିଆମାନେ ନୀଚ ଆଚରଣ କରୁଥିବା ଦେଖି କବିସୂର୍ଯ୍ୟ 'ଉତ୍କଳାଚାର' ନାମକ ଏକ ଅନୁଷ୍ଠାନ ଗଢ଼ିଲେ । ଓଡ଼ିଆ ଜାତିର ଆଚାର ବିଚାର ଶୁଦ୍ଧି ଥିଲା ଏହାର ଲକ୍ଷ୍ୟ । ଏହାଦ୍ୱାରା ଦକ୍ଷିଣ ଓଡ଼ିଶାର ସଂସ୍କୃତି ସୁରକ୍ଷିତ ହେଲା । ଏବେ ବି ଏ ପ୍ରକାର ସଂସ୍କାର ବିଶେଷ ଆବଶ୍ୟକ ।

ଆଠଗଡ଼ ରାଜା ଅସୁସ୍ଥ ଥିବାବେଳେ କବିସୂର୍ଯ୍ୟ ତାଙ୍କୁ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ତାଙ୍କର ପରୋପକାର କାର୍ଯ୍ୟ, ନିଃସ୍ୱାର୍ଥପର ପରାମର୍ଶ ଓ ବିଚକ୍ଷଣ ବୁଦ୍ଧି ଦେଖି ରାଜା ତାଙ୍କଠାରେ ବିଶ୍ୱାସ ଓ ସନ୍ତୋଷ ରଖୁଥିଲେ ।

ଆଠଗଡ଼ରେ ଦୀର୍ଘ ଦଶବର୍ଷ ରହିବା ପରେ ସେ ସମୟର ଇଂରେଜ ଜିଲାପାଳଙ୍କ ଅନୁରୋଧକ୍ରମେ ସେ ପାରଳାଖେମୁଣ୍ଡିର ନାବାଳକ ଯୁବରାଜଙ୍କ ଗୃହଶିକ୍ଷକ ରୂପେ ନିଯୁକ୍ତ ହେଲେ । ସେ କିଛି ଦିନ ପାଇଁ ଏହି ରାଜ୍ୟର ଶାସନ କାର୍ଯ୍ୟ ବି ବୁଝିଥିଲେ । କିନ୍ତୁ ସେଠାରେ ପରିସ୍ଥିତି ଭଲ ନ ହେବାରୁ ସେ ମହୁରୀ ରାଜ୍ୟକୁ ଚାଲିଆସିଲେ । ସେ କିଛି କାଳ ମହୁରୀ ରାଜ୍ୟର ଶାସନ ଦାୟିତ୍ୱ ନେଇଥିଲେ । ଏଠାରେ ବି ସେ ଶାସନ କ୍ଷେତ୍ରରେ ନିଜର ବିଚକ୍ଷଣ ବୁଦ୍ଧି ପ୍ରୟୋଗ କରିଥିଲେ ।

କବିସୂର୍ଯ୍ୟ ଇଂରାଜି ଜାଣି ନ ଥିଲେ । କିନ୍ତୁ ବୁଦ୍ଧି ବଳରେ ସେ ଉତ୍ତମ ଶାସନ ଚଳାଇ ଇଂରେଜ ହାକିମମାନଙ୍କ ପ୍ରଶଂସା ଭାଜନ ହୋଇଥିଲେ । ଏହିପରି କବିସୂର୍ଯ୍ୟ ଜଣେ ଭଲ ଶାସନକର୍ତ୍ତା ରୂପେ ନରସେବା ଏବଂ ନିଜର ଦୈନିକ ପୂଜାପାଠ ଓ ଦେବାଳୟମାନଙ୍କ ଉନ୍ନତି କରି ନାରାୟଣ ସେବା କରିଥିଲେ । ଜଣେ କବିଙ୍କଠାରେ ଏତେ ପ୍ରକାର ସୁଗୁଣ ଥିବା ଭାବିଲେ ତାଙ୍କ ଉଦ୍ଦେଶ୍ୟରେ ଆପେ ଆପେ ମଥା ନଇଁଯାଏ ।




# ସୂର୍ଯ୍ୟ ବୁଡ଼ିଗଲେ

ମହୁରୀ ରାଜ୍ୟର ପରିଚାଳକ ଥିବା ସମୟରେ କବିସୂର୍ଯ୍ୟ ବ୍ରହ୍ମପୁରର ବାଲାଜିପେଣ୍ଠ ସାହିରେ ପରିବାର ସହ ରହୁଥିଲେ । ମହୁରୀର ଶାସନ ଦାୟିତ୍ୱ ଛାଡ଼ିବା ପରେ ବି ସେ ଶେଷ ଯାଏଁ ସେହି ସ୍ଥାନରେ ରହୁଥିଲେ । ଏଣିକି ସେ କୌଣସି ରାଜାଙ୍କ ଅଧୀନ ହେବାକୁ ଇଚ୍ଛା କଲେ ନାହିଁ । ଆଠଗଡ଼ ରାଜା ତାଙ୍କର ବହୁତ ପ୍ରିୟ ଥିଲେ । ଶେଷ ଜୀବନ ଆଠଗଡ଼ରେ କଟାଇବାକୁ ସେ କବିସୂର୍ଯ୍ୟଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ସେ ତାଙ୍କ ଅନୁରୋଧ ରଖି ନ ଥିଲେ । ଅବଶ୍ୟ ସମୟେ ସମୟେ ଅନ୍ୟ ରାଜ୍ୟକୁ ଯାଇ ସାହିତ୍ୟ ଆଲୋଚନା କରି ଘରକୁ ଫେରିଆସୁଥିଲେ ।

ବ୍ରହ୍ମପୁରରେ ଥିବାବେଳେ ତାଙ୍କର ଏକମାତ୍ର ପୁତ୍ର ରଘୁନାଥ ଓ ବଡ଼ଭାଇ ହରିହରଙ୍କ ମୃତ୍ୟୁ ଘଟିଥିଲା । ଏଥିରେ କବିସୂର୍ଯ୍ୟ କିଛି ଦିନ ଭାଙ୍ଗି ପଡ଼ିଥିଲେ । ପରେ ଆଶ୍ୱସ୍ତ ହୋଇ ପ୍ରଭୁ ତୁମ୍ବନାଥଙ୍କଠାରେ ପୁତ୍ର ଆଶାରେ ପୂଜା, ଅଭିଷେକରେ ମନପ୍ରାଣ ଢାଳିଦେଲେ । ଏହା ଫଳରେ ତାଙ୍କର ଏକ ପୁତ୍ର ସନ୍ତାନ ହେଲା । ତାଙ୍କ ନାମ ବିଶ୍ୱନାଥ ।

ଖ୍ରୀ : ୧୮୪୫ ସମୟର କଥା । ରାଜାଙ୍କ ନିମନ୍ତ୍ରଣ ପାଇ କବିସୂର୍ଯ୍ୟ ଶେଷ ଥର ପାଇଁ ଆଠଗଡ଼ ଗଲେ । ସେଠି ତାଙ୍କୁ ଜ୍ୱର ହେଲା । ଚାହୁଁ ଚାହୁଁ ତାଙ୍କ ଦେହସାରା ବସନ୍ତର ଚିହ୍ନ ଦେଖାଗଲା ।

ରାଜା ସବାରୀ ଯୋଗେ ତାଙ୍କୁ ବ୍ରହ୍ମପୁରଠାରେ ଥିବା ତାଙ୍କ ଘରକୁ ପଠାଇଦେଲେ ।

ଏହାର ସାତ ଦିନ ପରର ଘଟଣା । ସେ ଦିନଟି ଥିଲା ପବିତ୍ର ଅକ୍ଷୟ ତୃତୀୟା । ପରିବାରର ସବୁ ପ୍ରକାର ସେବାଯତ୍ନ ଓ ଚିକିତ୍ସା ବୃଥା ହେଲା । ଏହି ପବିତ୍ର ଦିନରେ କବିସୂର୍ଯ୍ୟ ମର ଦେହ ଛାଡ଼ି ସ୍ୱର୍ଗକୁ ଚାଲିଗଲେ । ଓଡ଼ିଶାର ସାହିତ୍ୟ ଆକାଶର ସୂର୍ଯ୍ୟ ବୁଡ଼ିଗଲେ । ଚାରିଆଡ଼େ ହାହାକାର ପଡ଼ିଗଲା । ଓଡ଼ିଆ ଗୀତି ସାହିତ୍ୟର ପ୍ରାଚୀନ ଯୁଗର ଶେଷ ଦୀପ ଲିଭିଗଲା । ତାପରେ ଆସିଲା ଆଧୁନିକ ଯୁଗ ।

ଆଧୁନିକ ଯୁଗର ଶ୍ରେଷ୍ଠ କବି ରାଧାନାଥ ରାୟ କବିସୂର୍ଯ୍ୟଙ୍କ ଉଚ୍ଚ ପ୍ରଶଂସା କରି ଲେଖିଛନ୍ତି :

ଧନ୍ୟ ରଥେ ତୁମ୍ଭ ଜନ୍ମ ଶୁଭ କ୍ଷଣେ
ମୃତ୍ୟୁଞ୍ଜୟ ତୁମେ ଉତ୍କଳ ଭୁବନେ
ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।

କବିସୂର୍ଯ୍ୟଙ୍କ ପୁତ୍ର ବିଶ୍ୱନାଥ ଓ ନାତି ଲୋକନାଥ କବି ଓ ପଣ୍ଡିତ ଥିଲେ । ଲୋକନାଥଙ୍କ ପୁତ୍ର ଗଣେଶ୍ୱର ଆସିକା ସମବାୟ ବ୍ୟାଙ୍କରେ ଚାକିରୀ କରିଥିଲେ । ଗଣେଶ୍ୱରଙ୍କ ଚାରି ପୁତ୍ର ହେଲେ ପ୍ରଫୁଲ୍ଲଚନ୍ଦ୍ର, ଶାନ୍ତିପ୍ରସାଦ, ତାରାପ୍ରସାଦ ଓ ସୁଧାଂଶୁଶେଖର ।

କବିସୂର୍ଯ୍ୟ ଥିଲେ ଜଣେ ଅସାଧାରଣ ମଣିଷ । ତାଙ୍କ ଜୀବନର କେତୋଟି ବିଶେଷତ୍ୱ ମନେ ରଖିବା କଥା । ତାହା ଏମିତି :

୧. କବିସୂର୍ଯ୍ୟଙ୍କ ଜନ୍ମତିଥି ଶ୍ରୀପଞ୍ଚମୀ ଓ ମୃତ୍ୟୁ ଅକ୍ଷୟ ତୃତୀୟା । ଏଥିରୁ ଜଣାଯାଏ, ସେ ଜଣେ ଦେବପୁରୁଷ ଥିଲେ ।

୨. ତାଙ୍କର ଉଭୟ ପିତୃମାତୃ କୁଳ ବିଶେଷ ବିଦ୍ୱାନ୍ ଥିଲେ ।

୩. ତାଙ୍କ ପାଖରେ ଲକ୍ଷ୍ମୀ ଓ ସରସ୍ୱତୀ ଏକାଠି ଥିଲେ ।

୪. ସଂସ୍କୃତ ଓ ଓଡ଼ିଆ ଭାଷାରେ ତାଙ୍କର ଅନନ୍ୟ ବିଦ୍‌ବତ୍ତା ଥିଲା

୫. ସେ ସଂସ୍କୃତ ଓ ଓଡ଼ିଆ ଭାଷାରେ ଆଶୁକବି ଥିଲେ ।

୬. ସେ ଶ୍ରେଷ୍ଠ ଓଡ଼ିଶୀ ସଙ୍ଗୀତ ରଚୟିତା ଓ ସୁଗାୟକ ଥିଲେ ।

୭. ଦୈବୀ ପ୍ରସାଦରେ ସେ ଅଲୌକିକ ପ୍ରତିଭାର ଅଧିକାରୀ ହୋଇଥିଲେ ଓ ବାର୍ଦ୍ଧକ୍ୟରେ ପୁତ୍ର ପାଇଥିଲେ ।

୮. ସେ ମିଷ୍ଟଭାଷୀ, କିନ୍ତୁ ଚାଟୁକାର ନ ଥିଲେ; ଧର୍ମନିଷ୍ଠ, କିନ୍ତୁ ଧର୍ମାନ୍ଧ ନ ଥିଲେ; ସରଳ, କିନ୍ତୁ ବିବେକୀ ଥିଲେ; ନିରହଙ୍କାର, ଅଥଚ ସ୍ୱାଭିମାନୀ ଥିଲେ । ସେ ବନ୍ଧୁପ୍ରେମୀ ଓ ନିଃସ୍ୱାର୍ଥପର ଥିଲେ ।

୯. ସେ ଥିଲେ ଜଣେ ବିଚକ୍ଷଣ ପ୍ରଜାରଞ୍ଜକ ପ୍ରଶାସକ ।

୧୦. ଓଡ଼ିଆ ଭାଷା ଓ ସଂସ୍କୃତି ରକ୍ଷା ପାଇଁ ସେ ବିଶେଷ ଚେଷ୍ଟା କରିଥିଲେ ।

୧୧. ପ୍ରାଚୀନ ଓ ଆଧୁନିକ ସାହିତ୍ୟ ଯୁଗର ସଂଯୋଗକାରୀ ସେତୁ ଥିଲେ କବିସୂର୍ଯ୍ୟ ।

ସେଇ ଦିବ୍ୟ ପୁରୁଷଙ୍କୁ ଅଶେଷ ପ୍ରଣାମ ।

